# ମହାଭାରତୀୟ ସଂସ୍କୃତି

ଶ୍ରୀ ଲକ୍ଷ୍ମୀନାରାୟଣ ରାୟସିଂହ, ଏମ୍. ଏ

ଦାସ ବ୍ରଦର୍ସ

ମହାଭାରତୀୟ ସଂସ୍କୃତି

*Maha Bharatiya Sanskruti*


ଲେଖକ—ଶ୍ରୀ ଲକ୍ଷ୍ମୀନାରାୟଣ ରାୟସିଂହ

*Writer—Sri Laxmi narayan Ray Singha*



ପ୍ରକାଶକ—ଦାସ ବ୍ରଦର୍ସ

ବ୍ରହ୍ମପୁର : କଟକ

*Publisher—Das Brothers*

*Berhampur & Cuttack*

ମୂଲ୍ୟ—ତିନିଟଙ୍କା ପଚାଶପଇସା

*Price—Rupees Three & Fifty Paise*

ଅତିରିକ୍ତ ଟ ୧-୦୦

ମୁଦ୍ରାକର—ଶ୍ରୀହରନାଥ ପ୍ରେସ୍, କଟକ

*Printer—Sree Haranath Press, Cuttack*

# ଗ୍ରନ୍ଥ ପ୍ରବେଶ

ଭାରତକୁ ଜାଣିବାକୁ ହେଲେ "ମହାଭାରତ"କୁ ଜାଣିବା ଦରକାର । ମହାଭାରତ ଆମର ଜାତୀୟ ଜୀବନରେ ଏପରି ଭାବେ ଅଧିଷ୍ଠିତ ଯେ, ସେଥିପାଇଁ ଏକ ପ୍ରବାଦବାକ୍ୟ ଭାରତରେ ପ୍ରଚଳିତ—"ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ଏହାର ତାତ୍ପର୍ଯ୍ୟ ହେଉଛି କେବଳ ମହାଭାରତକୁ ଜାଣିଲେ ହିଁ ସମଗ୍ର ଭାରତବର୍ଷକୁ ଜାଣି ହୁଏ । ରବୀନ୍ଦ୍ରନାଥ ଯଥାର୍ଥରେ କହିଛନ୍ତି—ମହାଭାରତ ହେଉଛି ଭାରତୀୟ ସଂସ୍କୃତିର—"ସଜୀବ ବିଶ୍ୱବିଦ୍ୟାଳୟ ।"

ପୁସ୍ତକର ନାମକରଣ ହିଁ ଏହାର ଭିତ୍ତିରେ କରାଯାଇଛି । 'ମହାଭାରତ' ମହାଭାରତୀୟ ସଂସ୍କୃତିର ସ୍ୱରୂପ ଉଦ୍‌ଘାଟନରେ ଏକ ପଥିକୃତ ମହାଗ୍ରନ୍ଥ ।

କିନ୍ତୁ 'ମହାଭାରତ'ର ସମସ୍ତ ବିଷୟ ଆଲୋଚନା କରିବା ବହୁ ସାଧନାସାଧ୍ୟ, ସମୟସାପେକ୍ଷ କାର୍ଯ୍ୟ । ଏହି ଆଲୋଚନା କ୍ଷେତ୍ରରେ ଭାରତୀୟ ସଂସ୍କୃତିର କ୍ରମ-ପ୍ରଦର୍ଶନ ହିଁ କରାଯାଇଛି ମାତ୍ର । ତେଣୁ ସଂସ୍କୃତିର ଅର୍ଥ ଓ ତାହାର ଐତିହାସିକ ପରିପ୍ରକାଶଠାରୁ ଆରମ୍ଭ କରି ଋଗ୍‌ବେଦ ଓ ବୈଦିକ ସାହିତ୍ୟର ସଂକେତ ତଥା ପରବର୍ତ୍ତିତ ରୂପ ସହ 'ରାମାୟଣ', 'ମହାଭାରତ'ରେ

ପ୍ରତିଷ୍ଠିତ ସଂସ୍କୃତିର ଚିହ୍ନଗୁଡ଼ିକୁ କେନ୍ଦ୍ର କରି ଏହା ରଚିତ ହୋଇଛନ୍ତି ।

ଏହି ଆଲୋଚନା ପାଠକଙ୍କୁ କେବଳ ମହାଭାରତୀୟ ସଂସ୍କୃତିର ଏକ ଭ୍ରମ ଜାଣିବାରେ ହିଁ ସାହାଯ୍ୟ କରିବ ବୋଲି ଆଶା କରେ ।

ମାକ୍ସମୁଲର ଏକଦା କହିଥିଲେ—"……ଯେଉଁ ଜାତି ଯେତେବେଳେ ରାଜନୈତିକ ଅବନତିର ଚରମ ସୀମାରେ ପହଞ୍ଚେ, ସେତେବେଳେ ତାର ପୁରାତନ ସାହିତ୍ୟ ଆଡ଼କୁ ସେ ଝୁଙ୍କେ ଏବଂ ପୁରାତତ୍ତ୍ୱ ଆଲୋଚନା ଭବିଷ୍ୟତ ଲାଗି ବନ୍ଧ ବାନ୍ଧେ ।"

ଆଜିର ଭାରତୀୟ ରାଜନୀତି ତଥା ସାମାଜିକ ଅର୍ଥନୈତିକ ବିପର୍ଯ୍ୟୟ ଓ ତା' ସହିତ ଯୁବ-ଚିନ୍ତା-ଚେତନାର ବୈକଲ୍ୟ ସର୍ବତ୍ର ପ୍ରତ୍ୟକ୍ଷମାନ ।

ସେହି ପ୍ରତିକ୍ରିୟାର ବଶବର୍ତ୍ତୀ ହୋଇ ମୋର ଏ ଅଧ୍ୟୟନ ଓ ସେହି ଅଧ୍ୟୟନର ଏହା ଏକ ସାଙ୍କେତିକ ଓ ସଂକ୍ଷିପ୍ତ ପରିପ୍ରକାଶ ।

ପଣ୍ଡିତ ବ୍ୟକ୍ତିଙ୍କୁ ଏହା ନୈରାଶ୍ୟଜନକ ବୋଧ ହେବ । କାରଣ ବିଭିନ୍ନ ସମୟରେ ପଠିତ ପୁସ୍ତକ ଓ ପତ୍ରପତ୍ରିକାରୁ ଗ୍ରହଣ କରିଥିବା ଟିପ୍ପଣୀର ଏହା ଏକ ବିଚ୍ଛିନ୍ନ ସଂକଳନ ସ୍ୱରୂପ । ତେଣୁ ଏକ ସୁସଂହତ ଆଲୋଚନା ଏହା ନୁହେଁ, ସେଥିଲାଗି ଲେଖକ କ୍ଷମାପ୍ରାର୍ଥୀ ।

କଟକ
ତା ୨୬।୪।୭୮

ବିନୀତ
ଶ୍ରୀ ଲକ୍ଷ୍ମୀନାରାୟଣ ରାୟସିଂହ

୧

# ସଂସ୍କୃତି

ବର୍ତ୍ତମାନ ସଂସ୍କୃତି ଶବ୍ଦର ବହୁଳ ପ୍ରୟୋଗ ଦେଖାଯାଏ । ବିଭିନ୍ନ କ୍ଷେତ୍ରରେ ଏହାର ବହୁଳ ପ୍ରୟୋଗ ଯୋଗୁ ଶବ୍ଦଟିର ଅର୍ଥ-ବିଭିନ୍ନତା ସୃଷ୍ଟି ହୋଇଥାଏ ଓ ସାଧାରଣଙ୍କ ପକ୍ଷରେ 'ସଂସ୍କୃତି'ର ଅର୍ଥ ବୁଝିବାରେ ସାଧାରଣତଃ ଦୁର୍ବୋଧତା ସୃଷ୍ଟି କରିଥାଏ ।

'ସଂସ୍କୃତି' ଶବ୍ଦଟି ସାଧାରଣତଃ କ କ ଭାବରେ ବ୍ୟବହୃତ ହୁଏ, ତାହାର ଏକ ସଂକ୍ଷିପ୍ତ ସୂଚନାରୁ ଆରମ୍ଭ କଲେ ହିଁ ପରେ ସଂସ୍କୃତିର ପ୍ରକୃତ ଅର୍ଥ ବୁଝିବାରେ ସହାୟକ ହେବ । ସଂସ୍କୃତିକୁ ଭଦ୍ରତା ଓ ଶିଷ୍ଟାଚାର (କଲ୍‌ଚର) ବୋଲି ଅନେକ ମନେକରନ୍ତି । ଅମୁକ ଖୁବ୍ ସଂସ୍କୃତିବାନ୍ ବା ଅମୁକର ସଂସ୍କୃତି ଅଛି ଇତ୍ୟାଦିର ଅର୍ଥ ଯାହାର ବ୍ୟବହାରରେ ସାଧାରଣତଃ ଭଦ୍ରତା ଓ ଶିଷ୍ଟାଚାର ବୁଝାଯାଏ। ସଂସ୍କୃତି ଏପରି ଏକ ବସ୍ତୁ, ଯାହା କାହାର ଥାଏ ବା କାହାର ନ ଥାଏ । ଧର୍ମ, ଦର୍ଶନ, ଧ୍ୟାନ-ଧାରଣା, ଆଚାର-ଅନୁଷ୍ଠାନକୁ ସଂସ୍କୃତି ଭାବରେ ଯେଉଁମାନେ ପ୍ରକାଶ କରନ୍ତି, ସେମାନେ ଧର୍ମକୁ ହିଁ ସଂସ୍କୃତିରୂପେ ବିଚାର କରନ୍ତି; କାରଣ ତାହା ସର୍ବବ୍ୟାପକ ବୋଲି ସେମାନେ ବିଚାର କରିଥାନ୍ତି ।

ଆଜି କେହି କେହି ନୃତ୍ୟ, ଗୀତ, ଶିଳ୍ପ, ସ୍ଥାପତ୍ୟକୁ 'ସଂସ୍କୃତି'ର ଆଖ୍ୟା ଦେଇଥାନ୍ତି । ସେମାନଙ୍କ ବିଚାରରେ ଏହିଥିରେ ହିଁ ସଂସ୍କୃତି

ନିହିତ । ତା ବ୍ୟତୀତ କବିତା, ଗଳ୍ପ, ଉପନ୍ୟାସ, ନାଟକ ଇତ୍ୟାଦିକୁ 'ସଂସ୍କୃତି'ର ବୃତ୍ତିବଦ୍ଧ ବୋଲି କୁହାଯାଏ । ସଭା ସମାବେଶକୁ "ସାଂସ୍କୃତିକ ସମାବେଶ" ରୂପେ ମଧ୍ୟ ଗଣନା କରାଯାଇଥାଏ ।

ଏହି ବହୁଳ-ପ୍ରୟୋଗ ଶବ୍ଦଟିର ଏପରି ବି ଅର୍ଥ ହୁଏ ଯେ 'ସଭ୍ୟତା' ଓ 'ସଂସ୍କୃତି' ଦୁଇଟି ଶବ୍ଦ ଏକାର୍ଥିକ ବୋଧହୁଏ । ଯଦିଓ ସଂସ୍କୃତିର ଅନ୍ତର୍ଗତ ଅର୍ଥ ସଭ୍ୟତା (Civilisation), ତଥାପି ସେ ଦୁଇଟି ଶବ୍ଦ ଏକାର୍ଥିକ ନୁହେଁ । 'ସଂସ୍କୃତି' ଶବ୍ଦ ସହିତ 'କୃଷ୍ଟି' ଶବ୍ଦ ଏକାର୍ଥିକ ବୋଲି ଅନେକ କ୍ଷେତ୍ରରେ ପ୍ରୟୋଗ ହେଉଥିବାର ଦେଖାଯାଇଥାଏ । କିନ୍ତୁ 'କୃଷ୍ଟି' ଶବ୍ଦର ବୈଦିକ ଅର୍ଥ ହେଉଛି— "ସମୁଦାୟ କୃଷକଦଳ" (୧) । ଇଂରେଜୀ କଲ୍‌ଚର୍ (Culture) ଶବ୍ଦଟିକୁ ବୃଷ ଅର୍ଥରେ ଗ୍ରହଣ କଲେ କୃଷ୍ଟି ହିଁ ନିକଟତମ ଓଡ଼ିଆ ପ୍ରତିଶବ୍ଦ ହେବ । ତେଣୁ 'କୃଷ୍ଟି' ଓ 'ସଂସ୍କୃତି' ଦୁଇଟି ଶବ୍ଦ ପ୍ରାୟ ସମାର୍ଥିକ ହେବାରେ ବିରୋଧ ନାହିଁ । କିନ୍ତୁ 'ସଂସ୍କୃତି' ଶବ୍ଦର ପ୍ରଚଳନ ଏତେ ବ୍ୟାପକ ଯେ ତାହା "ସଭ୍ୟତା", "କୃଷ୍ଟି" ଶବ୍ଦ ଅପେକ୍ଷା ଏକ ବ୍ୟାଖ୍ୟାର ଅପେକ୍ଷା ରଖେ ।

'ସଂସ୍କୃତି'ର ବ୍ୟାଖ୍ୟା ସମ୍ପର୍କରେ ସମାଜବିଜ୍ଞାନୀମାନଙ୍କର କ୍ରମାଗତ ଚେଷ୍ଟାର ଅନ୍ତ ନାହିଁ । ଟାଇଲରଙ୍କ ମତରେ—"ଜ୍ଞାନ, ବିଶ୍ୱାସ, କଳା, ଶିଳ୍ପ, ନୀତି, ଆଇନ କାନୁନ, ପ୍ରଥା, ଅନୁଷ୍ଠାନ, ଅଭ୍ୟାସ ଇତ୍ୟାଦି ଯାବତୀୟ କାର୍ଯ୍ୟ ହିଁ ସମାଜସାପେକ୍ଷ ବ୍ୟକ୍ତିର ସଂସ୍କୃତିଜ୍ଞାପକ" (୨) । ଆମେରିକାନ୍ ଓ ଆଧୁନିକ ସମାଜବିଜ୍ଞାନୀ ହର୍ଟନଙ୍କ ମତରେ, "ଯାହା କିଛି ଆମେ ସମାଜରୁ ଶିକ୍ଷା କରୁ ଓ ଆଦାନ-ପ୍ରଦାନ କରୁ, ସେ ସକଳର ପ୍ରକାଶ ହିଁ ସଂସ୍କୃତି" (୩) ।

ଏହି ଉଦ୍ଧୃତି ଦ୍ୱୟରେ ଯାହା ପ୍ରକାଶ ପାଉଛି ତାହାକୁ 'ସଂସ୍କୃତି'ର ବ୍ୟାଖ୍ୟାରୂପେ ଧରାଗଲେ ମଧ୍ୟ 'ସଂସ୍କୃତି' ଶବ୍ଦର ଅନ୍ୟ ବୈଜ୍ଞାନିକ ବ୍ୟାଖ୍ୟା ରହିଛି । ସେ ବ୍ୟାଖ୍ୟାଟି ହେଉଛି—ମନୁଷ୍ୟର ହିଁ କେବଳ ସଂସ୍କୃତି ଅଛି, ମନୁଷ୍ୟେତର ପ୍ରାଣୀ ବା କୌଣସି ବସ୍ତୁର ନିଜସ୍ୱ ସଂସ୍କୃତି ନାହିଁ । ତେଣୁ ମନୁଷ୍ୟ ହେଉଛି 'ସଂସ୍କୃତି'ର ସ୍ରଷ୍ଟା । ଏହାକୁ ଭିନ୍ନ ଭାବରେ ପ୍ରତିପାଦିତ କଲେ ହେବ—"ମନୁଷ୍ୟର ଜୀବନ-ସଂଗ୍ରାମର ବା ପ୍ରକୃତି ଉପରେ ଅଧିକାର ବିସ୍ତାରର ପ୍ରଚେଷ୍ଟା ହିଁ ସଂସ୍କୃତି; ଆଉ ସଂସ୍କୃତିର ମୂଳ ଭିତ୍ତି ମଧ୍ୟ ଅତ୍ୟନ୍ତ ବାସ୍ତବ—ଜୀବିକା-ପ୍ରୟାସ ସହଜତର କରିବା ।"

ଏହି ଜୀବିକା-ପ୍ରୟାସର ସ୍ୱରୂପ ଓ ଫଳାଫଳର ସଙ୍କେତ ଓ ପ୍ରକୃତି ସହିତ ତାର ସଂଗ୍ରାମର ଘାତ-ପ୍ରତିଘାତରେ ସଂସ୍କୃତି ଚାଳିତ, ବର୍ଦ୍ଧିତ ।

ବଞ୍ଚିରହିବାର ମୌଳିକ ପ୍ରେରଣାର ତାଡ଼ନାର ବଶବର୍ତ୍ତୀ ହୋଇ ମନୁଷ୍ୟ ପରିବେଶ ସହିତ ନିଜକୁ ମିଶାଇଦେଇ ରହିବାକୁ ଚାହେଁ । ଜୀବିକା ସହଜସାଧ୍ୟ କରିବା ଲାଗି ମନୁଷ୍ୟର ଅକ୍ଳାନ୍ତ ଚେଷ୍ଟା ହିଁ ପଶୁଜଗତରୁ ମନୁଷ୍ୟକୁ ଭିନ୍ନ କରିଛି । ମନୁଷ୍ୟ ଅନ୍ୟ ପ୍ରାଣୀଠାରୁ ହୋଇଛି ଉନ୍ନତ, ସ୍ୱତନ୍ତ୍ର ।

ଜୀବଜଗତ ପ୍ରକୃତିର ନିୟମରେ ବନ୍ଧା । ସେ ନିୟମକୁ ପରିବର୍ତ୍ତନ କରିବା ତା' ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ମଣିଷ ପ୍ରକୃତିର ନିୟମ ବୁଝେ, ତାକୁ ନିଜର ବ୍ୟବହାରରେ ଲଗାଇପାରେ ; ତେଣୁ ମନୁଷ୍ୟେତର ପ୍ରାଣୀଠାରୁ ସେ ଭିନ୍ନ ଭାବରେ, ଭିନ୍ନ ରୂପରେ, ନିଜସ୍ୱ ରୀତିରେ ଚେଷ୍ଟା କରିଆସିଛି କିପରି ତାର ଜୀବନ-ଯାତ୍ରା ସହଜ ହେବ, ସୁଲଭ ହେବ । ମନୁଷ୍ୟର କ୍ରମବିକାଶ ଓ ତାର

ସାମାଜିକ ଇତିହାସ ଅଧ୍ୟୟନ କଲେ ହିଁ ଜଣାପଡ଼େ ଯେ ମନୁଷ୍ୟ ତାର ଜୀବନ-ଯାତ୍ରାକୁ ସହଜତର କରିବାକୁ ହିଁ କେବଳ ସେ କରିଆସିଛି ବିପୁଳ ପ୍ରୟାସ, ଅଫୁରନ୍ତ ପରିଶ୍ରମ ଓ ପ୍ରକୃତି ସହିତ ଅଶେଷ ସଂଗ୍ରାମ । ଏହି ସଂଗ୍ରାମରେ ସେ ଯେତେ ପରିମାଣରେ ଜୟୀ ହୋଇଛି, ଜୀବିକାର ପ୍ରୟାସକୁ ସେ ଯେତେ ପରିମାଣରେ ସହଜତର କରିପାରିଛି, ତାର ବଞ୍ଚିବାର ପରିବେଶକୁ ସେ ସେତେ ପରିମାଣରେ କରିଛି ସୁନ୍ଦର । ସେ ସୌନ୍ଦର୍ଯ୍ୟ ରୂପ ପରିଗ୍ରହ କରିଛି ଯେଉଁ ଯେଉଁ ଭାବରେ, ତାହାର ନିଦର୍ଶନ ହିଁ ହେଉଛି 'ସଂସ୍କୃତି' ।

ତେଣୁ ସଂସ୍କୃତିକୁ ଆମେ କାଳଗତ ଓ ଦେଶଗତ କରି ବିଗ୍ଭର କରୁ । ମାନବ ସଂସ୍କୃତିଠାରୁ ଏହା ଭିନ୍ନ । ଏପରି ଭିନ୍ନତାରୁ ମଧ୍ୟ ଭିନ୍ନ ଦେଶ ତଥା କାଳର ବିଗ୍ଭରରେ ମନୁଷ୍ୟର ସଂଗ୍ରାମୀ ଇତିହାସର କ୍ରମ ଜାଣିବାରେ ଆମକୁ ସାହାଯ୍ୟ କରିଥାଏ ।

ଏହି କାଳଗତ ଓ ଦେଶଗତ 'ସଂସ୍କୃତି'କୁ ପୁଣି ନାନା ଭାବରେ ପ୍ରକାଶ କରାଯାଇଥାଏ; ଯଥା—ପ୍ରାଚୀନ ସଂସ୍କୃତି, ମଧ୍ୟଯୁଗୀୟ ସଂସ୍କୃତି ଇତ୍ୟାଦି । ଦେଶଗତ ଭାବେ କହିଥାଉ— ଭାରତୀୟ ସଂସ୍କୃତି, ୟୁରୋପୀୟ ସଂସ୍କୃତି ଇତ୍ୟାଦି ଓ ଏହାକୁ ଭିନ୍ନରୂପେ ବି ପ୍ରକାଶ କରୁ ଚୀନ୍ ସଭ୍ୟତା, ଗ୍ରୀକ୍ ସଭ୍ୟତା, ପାଶ୍ଚାତ୍ୟ ସଭ୍ୟତା ଇତ୍ୟାଦି । ତା ବ୍ୟତୀତ ଆଉ ଏକ ସଂକୀର୍ଣ୍ଣ ଅର୍ଥରେ ବି ପ୍ରକାଶ କରୁ—ହିନ୍ଦୁ ସଂସ୍କୃତି, ମୁସଲମାନ୍ ସଂସ୍କୃତି ଇତ୍ୟାଦି । ହୁଏ ତ ଗୋଟିଏ ଦେଶରେ ପ୍ରାଚୀନ ସଂସ୍କୃତି, ମଧ୍ୟଯୁଗୀୟ ସଂସ୍କୃତି ତଥା ହିନ୍ଦୁ ସଂସ୍କୃତି, ମୁସଲମ୍ ସଂସ୍କୃତିର ଚିହ୍ନ ଥାଇପାରେ ଓ ସେହିପରି ସଭ୍ୟତାକୁ ମଧ୍ୟ ବିଗ୍ଭର କରାଯାଇପାରେ ।

ତେଣୁ ମୋଟାମୋଟି 'ସଂସ୍କୃତି'ର ତନୋଟି ରୂପ ବୈଜ୍ଞାନିକ ଭାବେ ପ୍ରତିପାଦିତ କରାଯାଇଥାଏ । ପ୍ରଥମତଃ, ମନୁଷ୍ୟ ଯେଉଁଠି ଥାଏ, ସେ ଦେଶରେ ସେହି ମଣିଷର ଜୀବନ-ସଂଗ୍ରାମର ବାସ୍ତବ ଉପକରଣ (Material means); ଦ୍ୱିତୀୟତଃ, ସଂସ୍କୃତିର ପ୍ରଧାନ ଆଶ୍ରୟ ସମାଜ-ଯାହାରି ବାସ୍ତବ ବ୍ୟବସ୍ଥା (Social structure); ତୃତୀୟତଃ, ସଂସ୍କୃତିର ଶେଷ ପରିଚୟ ମାନସ ସଂପଦ । ଏହି ତନୋଟିର ମିଳନରେ 'ସଂସ୍କୃତି'ର ଅର୍ଥ ପ୍ରକାଶ ପାଏ, ସଭ୍ୟତା ନିରୂପିତ ହୁଏ ।

---

# ମହାଭାରତୀୟ ସଂସ୍କୃତି

ଏହି ବୈଜ୍ଞାନିକ ବ୍ୟାଖ୍ୟା ମାଧ୍ୟମରେ ଭାରତୀୟ ସଂସ୍କୃତିକୁ ବ୍ୟାଖ୍ୟା କରିବା ଏକ ଭିନ୍ନ ଉଦ୍ୟମ । ମହାଭାରତୀୟ ସଂସ୍କୃତି କେଉଁ ଜୀବନ-ମୂଲ୍ୟବୋଧରେ ଗଢ଼ିଉଠିଛି, ତାହାର କାବ୍ୟିକ ଅଧ୍ୟୟନରେ ଏହି ଆଲୋଚନା ସୀମାବଦ୍ଧ ।

କିନ୍ତୁ ଏହି କାବ୍ୟିକ ଅଧ୍ୟୟନ ପୂର୍ବରୁ ଭାରତୀୟ ସଂସ୍କୃତିର ସ୍ତର-ବିସ୍ତର ଅପ୍ରାସଙ୍ଗିକ ହେବ ନାହିଁ, ବରଂ ତାହା ଜାଣିଲେ ହିଁ କାବ୍ୟିକ ଚିନ୍ତା-ଚେତନା ବୁଝିବାରେ ଅଧିକ ସାହାଯ୍ୟ କରିବ । ଏହି ସଂସ୍କୃତି ବିସ୍ତରରେ 'ଶିଷ୍ଟ' ସଂସ୍କୃତିର ଧାରା ହିଁ ଆଲୋଚନାର ପରିସର ମଧ୍ୟକୁ ଆସିବାକୁ ବାଧ୍ୟ । କାରଣ କାବ୍ୟିକ ବିବେଚନା ଓ ବିସ୍ତରର ଅନୁସରଣ କରି ମହାଭାରତୀୟ ସଂସ୍କୃତିର ଅଧ୍ୟୟନରେ ପ୍ରବୃତ୍ତ ହେଲେ ହିଁ ଏହି 'ଶିଷ୍ଟ' ସଂସ୍କୃତିର ରୂପରେଖ ପ୍ରକଟ ହୋଇଥାଏ ।

ଉଦାହରଣତଃ କୁହାଯାଇପାରେ ଯେ କାଳିଦାସଙ୍କ କାବ୍ୟ-ସମ୍ଭାରରେ ଯେଉଁ ସୌନ୍ଦର୍ଯ୍ୟ-ବୋଧ ପ୍ରତିଷ୍ଠିତ ହୋଇଛି, ତାହା ତତ୍‌କାଳୀନ 'ଶିଷ୍ଟ' ଓ ଶିକ୍ଷିତ ଲୋକଙ୍କର ଜୀବନର ଅଙ୍ଗ ଭାବେ ପ୍ରତିଷ୍ଠିତ ଥିଲା—ଯେଉଁମାନେ ଏହି ପ୍ରକାର କାବ୍ୟକୁ ସ୍ୱୀକୃତି ଏବଂ ପ୍ରୋତ୍ସାହନ ଦେଉଥିଲେ । ସଂସ୍କୃତରେ ଏହିପରି ଶ୍ରେଣୀକୁ 'ଶିଷ୍ଟ'

ଶ୍ରେଣୀ ବୋଲି କୁହାଯାଇଛି । କାଳିଦାସଙ୍କ ସୌନ୍ଦର୍ଯ୍ୟବୋଧ ତତ୍କାଳୀନ ସମସ୍ତ ଭାରତୀୟଙ୍କର ସୌନ୍ଦର୍ଯ୍ୟବୋଧ ନ ଥିଲା । କିନ୍ତୁ ଯେଉଁ ଅଭିବ୍ୟକ୍ତି ସେହି କାବ୍ୟିକ ରୂପରେ ପରିପୁଷ୍ଟ ହୋଇଛି, ତାହା ମଧ୍ୟ ସାମାଜିକ ଜୀବନରେ ଅନୁଭୂତ ହୋଇଛି । ତେଣୁ କାଳିଦାସଙ୍କର ପ୍ରକାଶିତ ଅଭିବ୍ୟକ୍ତି କାଳଜୟୀ ହୋଇଛି ସେହି କ୍ଷେତ୍ରରେ, ଯାହା ଚିରନ୍ତନ ସତ୍ୟକୁ ବହନ କରିଛି । ଏପରି ଚିରନ୍ତନ ସତ୍ୟର ଏକ ଉଦାହରଣ ହେଉଛି—"ଭାରତୀୟ ପିତାମାତା ଝିଅକୁ ବିଦାୟ କରିବା ସମୟରେ ବଡ଼ ଦୁଃଖ ଅନୁଭବ କରନ୍ତି ।" 'ଅଭିଜ୍ଞାନ ଶାକୁନ୍ତଳମ୍'ର ରଚୟିତା ଏହି ଜୀବନ-ରୂପକୁ ସାର୍ଥକତା ଅଥବା ମହତ୍ତ୍ୱର ସହିତ ଘୋଷଣା କରିଛନ୍ତି । ଏହି କଥା ନାରୀର ଅସ୍ତିତ୍ୱର ଆଦର୍ଶ ଉପଲକ୍ଷରେ କୁହାଯାଇଥିଲା । ସୁଖ ଦୁଃଖ ତଥା ନୈତିକତାର ବହୁ ଉଦାହରଣ ଏଥିରେ ଦିଆଯାଇଛି, ଯେଉଁଥିରେ ଜନସାଧାରଣଙ୍କର ଚେତନାର ସାମଞ୍ଜସ୍ୟ ରହିଛି । ଏହି ପ୍ରକାର ସାହସ, ଉଦାରତା, ତ୍ୟାଗ ଆଦି ଗୁଣ ପ୍ରତି ପ୍ରଶଂସାଭାବ ସାଂସ୍କୃତିକ ଚେତନାର ଅଙ୍ଗ ହେବା ପୂର୍ବରୁ ଜାତୀୟ-ଜୀବନର ସ୍ୱଭାବ ହୋଇ ଉଠିଥିଲା (୪) । କିନ୍ତୁ ଏଠାରେ ଆଉ ଏକ ପ୍ରଭେଦ ସୂଚାଇଦେବା ଉଚିତ ହେବ ।

ପ୍ରଶ୍ନ ଉଠିପାରେ, ଭାରତୀୟ ସାହିତ୍ୟରେ ଶ୍ରୀକୃଷ୍ଣଙ୍କର ବାତ୍ସଲ୍ୟ ବା କୌଣସି ଯୁବତୀର କୌଣସି ଏକ ବିଶେଷ ସମୟ ବା ଘଟଣାର ପ୍ରଣୟାଳାପ, ଯୁବତୀ ପ୍ରତି ହାସ୍ୟ-କଟାକ୍ଷ ଆଦି ସାଂସ୍କୃତିକ ଚେତନାର ଅଙ୍ଗ କି ନୁହେଁ ? ଏହା ସାଂସ୍କୃତିକ ଚେତନାର ଅଙ୍ଗ କେବେ ହୋଇ ନ ପାରେ । କାରଣ ଏହା ଜଣେ ବ୍ୟକ୍ତିବିଶେଷର ତତ୍ ସମ୍ପୃକ୍ତ କୌଣସି କୌଣସି ବ୍ୟକ୍ତିବିଶେଷଙ୍କର ପ୍ରାକୃତିକ

ଜୀବନର ଅଙ୍ଗ । ଯାହା ପ୍ରକୃତ, ଜୀବନର ଅଙ୍ଗବିଶେଷ, ତାହା ସାଂସ୍କୃତିକ ଚେତନାର ପରିପ୍ରକାଶ ନୁହେଁ । ଉକ୍ତ କ୍ରିୟାକଳାପର ସୁନ୍ଦର ଓ ରୋଚକପୂର୍ଣ୍ଣ ବର୍ଣ୍ଣନା କରାଯାଇଥିବା ସାହିତ୍ୟକୃତି ସାଂସ୍କୃତିକ ଅଧ୍ୟୟନ କ୍ଷେତ୍ରରେ ମୂଲ୍ୟବାନ, ସନ୍ଦେହ ନାହିଁ; କିନ୍ତୁ ଏହା ଯେ 'ଶିଷ୍ଟ'ଙ୍କ ଆଶ୍ରିତ ସଂସ୍କୃତିର ରୂପ ଓ ଏହି ଚେତନାର ମୂଳ ରୂପ ଯଦିଓ ସମାଜର ସମସ୍ତ ସଦସ୍ୟଙ୍କ ନିକଟରେ ପ୍ରାପ୍ତ ହୋଇପାରେ, ତଥାପି ଏହାକୁ ମହତ୍ତ୍ୱପୂର୍ଣ୍ଣରୂପେ ଯେଉଁମାନେ ପ୍ରତିପାଦିତ କରିଛନ୍ତି, ଏହା ବହୁମୂଲ୍ୟ ଦେଇଛନ୍ତି, ସେମାନେ ନିଶ୍ଚୟ ତତ୍‌କାଳୀନ ସମାଜର ସମସ୍ତ ସଦସ୍ୟ ନୁହନ୍ତି । ଏହି କ୍ଷେତ୍ରରେ ପ୍ରକଟିତ ସୌନ୍ଦର୍ଯ୍ୟ ବିଶ୍ଳେଷଣ ବା ଅନ୍ୟ ଭାବରେ କହିଲେ ସେହି ଘଟଣାଗୁଡ଼ିକୁ ବହୁମୂଲ୍ୟ ଦାନରୁ ଗୋଟିଏ କଥା ସ୍ପଷ୍ଟ, ଯେ ସେ ସମୟରେ ସେହିପରି ସାମାଜିକ ଘଟଣା ବହୁଳ ଦେଖାଯାଇପାରିଥାଏ । କିନ୍ତୁ ତାହା ଯେ ସମଗ୍ର ସମାଜର ସାଂସ୍କୃତିକ ଅବିଚ୍ଛିନ୍ନ ଅଙ୍ଗ ତାହା ନୁହେଁ, ତାହା ସେଇ ସମାଜର 'ଶିଷ୍ଟ' ଗୋଷ୍ଠୀର ଚିନ୍ତା-ଚେତନା ତଥା କାର୍ଯ୍ୟକାରୀ ସାମାଜିକ ବିଶିଷ୍ଟତା ।

---

୧

# ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ

ଭାରତୀୟ ସଂସ୍କୃତିର ଦୁଇଟି ପ୍ରଧାନ ଲକ୍ଷଣ ରହିଛି । ଗୋଟିଏ ହେଉଛି ଏହାର ଧାରାବାହିକତା ଓ ଅନ୍ୟଟି ହେଉଛି ସହନଶୀଳତା ।

ଧାରାବାହିକତା ଅର୍ଥରେ ଏତିକି କୁହାଯାଇପାରେ ଯେ, ଭାରତୀୟ କୃଷି-ସଭ୍ୟତା ଆରମ୍ଭ ହୋଇଛି ବହୁ ଦିନ ଆଗରୁ ଏବଂ ଏହା ଯେତେ ଦୀର୍ଘ ଦିନ ଧରି ଚାଲିଆସିଛି ଓ ଭାରତଭୂମିରେ ସ୍ଥାୟୀ ହୋଇଛି, ତାହା ପୃଥିବୀର ଅନ୍ୟ କୌଣସି ଦେଶରେ ସମ୍ଭବ ହୋଇ ନାହିଁ । କୃଷି-ସଭ୍ୟତାର ଏହି ଦୀର୍ଘଜୀବନ ଓ ବହୁଳ ପ୍ରସାର ସମ୍ଭବ ହୋଇଛି ପ୍ରକୃତି ଉପରେ ନିର୍ଭର କରି । ସିନ୍ଧୁ, ଗଙ୍ଗା, ଗୋଦାବରୀ, କାବେରୀ ପ୍ରଭୃତି ନଦନଦୀ, ବିସ୍ତୃତ ସମତଳଭୂମି କୃଷିବିକାଶର ପରମ ଓ ଅନୁକୂଳ କ୍ଷେତ୍ରରୂପେ ପ୍ରତିଷ୍ଠିତ ହୋଇଥିଲା । "ଦେବତାତ୍ମା ହିମାଳୟ" ଏ ଦେଶକୁ ବହିଃଶତ୍ରୁ ଆକ୍ରମଣରୁ ପ୍ରାକୃତିକ ପ୍ରତିବନ୍ଧକ ଭାବେ ଦୀର୍ଘଦିନ ରକ୍ଷାକରି ଆସିଥିଲା । ଏହା ସତ୍ତ୍ୱେ ମଧ୍ୟ କୃଷି-ସଭ୍ୟତାର ନାନା ଅନ୍ତର୍ବିରୋଧ ଭାରତ ଭୂଖଣ୍ଡରେ ସୃଷ୍ଟି ହୋଇଛି, ବହୁ ବିପର୍ଯ୍ୟୟ ଘଟିଛି । ସେହି ଦ୍ୱନ୍ଦ୍ୱ, ବିରୋଧ ଓ ବିପର୍ଯ୍ୟୟର ସଙ୍କେତ ଭାରତୀୟ ଜନସମାଜ ଓ ଜନମାନସ ବହନ କରିଆସିଛି ଓ ସଞ୍ଚୟ କରି ରଖିଛି । ନୀଳନଦୀର ଉପକୂଳସ୍ଥ ସଭ୍ୟତା ପରି ଏହା ଲୁପ୍ତ ହୋଇଯାଇ ନାହିଁ । ଏଠାରେ ବହୁ ସାମ୍ରାଜ୍ୟ ଧ୍ୱଂସ ପାଇଛି; ତଥାପି ସଂସ୍କୃତିର ଧାରା ଏକାବେଳକେ ଧ୍ୱଂସ ପାଇଯାଇ ନାହିଁ । ତେଣୁ ଭାରତୀୟ ସଂସ୍କୃତିର ଧାରାବାହିକତା ବିଦ୍ୟମାନ—ଏହି ସଂସ୍କୃତି ବିଚ୍ଛିନ୍ନ, ଖଣ୍ଡିତ ବା ବିଭକ୍ତ ସଂସ୍କୃତିର ସମାହାର ନୁହେଁ ।

ଏହି ସଂସ୍କୃତି ବହୁ ନୂତନକୁ ଆତ୍ମସାତ୍ କରିଛି, ନିଜ ଧର୍ମ ସହିତ ମିଶାଇ ନେଇଛି । ତେଣୁ ଏ ସଂସ୍କୃତିର ଦୃଷ୍ଟିରୁ ବୈଶିଷ୍ଟ୍ୟ ହେଉଛି ସହନଶୀଳତା ।

"ଏହାକୁ କେହି କେହି ଦାର୍ଶନିକ କହିଛନ୍ତି—ଭାରତବର୍ଷର ସମନ୍ୱୟଶକ୍ତି; କେହି କହିଛନ୍ତି—ବହୁକୁ ଏକ କରିବାର ସାଧନା; ଆଉ କେହି ବା କହିଛନ୍ତି—ସବଳ ଗ୍ରହଣଶୀଳତା; ଆଉ ଅନ୍ୟ କେହି କହନ୍ତି—ଅକ୍ଷମ ନମନୀୟତା । ସେ ଯାହାହେଉ, ଆମର ବର୍ତ୍ତମାନ କାଳର ସଂସ୍କୃତି ମଧ୍ୟରେ ମଧ୍ୟ ଏଇ ଦୁଇ କାରଣରୁ ବହୁ ଦିନର ପୁରାତନ ଖାଜକଣା ଜମା ହୋଇଅଛି, ଅଥଚ ମଧ୍ୟ ନାନା ପର୍ଯ୍ୟାୟର ଉଦ୍ଭାବନା ମିଶିଅଛି, ଏହା ସର୍ବଦା ମନେରଖିବାକୁ ହେବ । ଆଉ ତା' ଫଳରେ ଭାରତୀୟ ସଂସ୍କୃତିର ସର୍ବପ୍ରଧାନ ଲକ୍ଷଣ ମଧ୍ୟ ସମାଜରେ ହିଁ ଆମ ଆଖିରେ ପଡ଼େ—ଏହାର ବୈଚିତ୍ର୍ୟ ।" (୪) ।

ଏହି ବୈଚିତ୍ର୍ୟଟି ହେଉଛି ପୁରାତନକୁ ଆମେ ଏକବାରେ ବିଲୁପ୍ତ ହେବାକୁ ଦେଉ ନାହୁଁ; ଆଦିମ ଜୀବନ-ଯାତ୍ରାର ରୂପ ନାନାଠାରେ ଦେଖାଯାଏ । ପୁଣି ପରିବର୍ତ୍ତନ ମଧ୍ୟ ଘଟିଅଛି । ଭାରତବର୍ଷ ବହୁ ଜାତିର ଦେଶ, ଦେଶ ମଧ୍ୟ ପ୍ରକାଣ୍ଡ, ପ୍ରାୟ ଏକ ମହାଦେଶ । କାର୍ଯ୍ୟତଃ ବିଭିନ୍ନ ଅଞ୍ଚଳରେ, ବିଭିନ୍ନ କାଳରେ, ବିଭିନ୍ନ ଅନୁଷ୍ଠାନ, ଧ୍ୟାନ-ଧାରଣା ଉଦ୍ଭୂତ ଓ ବିକଶିତ (Evolved) ହୋଇଅଛି; ଆମେ ତାହା ମଧ୍ୟ ନାନା ଭାବରେ କାଳଧର୍ମ, ଲୋକ-ଆଚାର ବା ବିଶେଷ ବର୍ଣ୍ଣର ବା ବିଶେଷ ଅଞ୍ଚଳର ଆଚାର ଧର୍ମ ବୋଲି ମାନି ନେଇଅଛୁ । ଏହା ବ୍ୟତୀତ ବାରମ୍ବାର ବିଦେଶୀ ଶାସକ ଆସିଛନ୍ତି; ବିଦେଶୀ-ଉଦ୍ଭାବିତ ଜୀବିକା-ପଦ୍ଧତି ଓ ତାହାର ଧ୍ୟାନ-ଧାରଣା ଭାରତବର୍ଷରେ ମଧ୍ୟ ପ୍ରସାରିତ (Diffused) ହୋଇଅଛି—

ସେତେବେଳେ ଭାରତବର୍ଷରେ ତଦୁପଯୋଗୀ ପ୍ରାକୃତିକ ଓ ସାମାଜିକ ପରିବେଶ ତାହା ଲାଭ କରିଅଛି । ସେଇସବୁ "ଦାନ" ଆସି ଭାରତର ନିଜସ୍ୱ "ଅବଦାନ"କୁ ଆହୁରି ନୂତନ କରିଦେଇଛି । ତେଣୁ ସମଗ୍ର ଭାରତୀୟ ସଂସ୍କୃତିର ଗୋଟାଏ ମୋଟ ଉପରେ—ଅତ୍ୟନ୍ତ ଅସ୍ପଷ୍ଟ ହେଲେ ମଧ—"ଐକ୍ୟବଦ୍ଧ" ରୂପ ଯେପରି ଅଛି, ସେଇପରି ଅଛି ଏଇ ଭାରତୀୟ ସଂସ୍କୃତିର ଅଫୁରନ୍ତ ବୈଚିତ୍ର୍ୟ" (୬) ।

ଏହି ଧାରାବାହିକତା, ସହନଶୀଳତା ଓ ବୈଚିତ୍ର୍ୟର ଧାରାବାହିକ ଇତିହାସ ହେଉଛି ମହାଭାରତୀୟ ସଂସ୍କୃତିରେ ଦ୍ରଷ୍ଟବ୍ୟ ବିଷୟବସ୍ତୁ । ତେଣୁ ଏହାର ମୂଳ ଉତ୍ସ-ସନ୍ଧାନରେ ଆମକୁ ଭାରତର ଅତୀତ ଇତିହାସର ଏକ ଧାରାନୁସରଣ କରିବାକୁ ହେବ ।

ଏହି ଅନୁସରଣରେ ଐତିହାସିକ ସିଦ୍ଧାନ୍ତ ହିଁ ଏକମାତ୍ର ସୁନିର୍ଦ୍ଦିଷ୍ଟ ପନ୍ଥା ।

୧୯୨୭ ପର୍ଯ୍ୟନ୍ତ ଭାରତ ଇତିହାସ ଅଧ୍ୟୟନ ଭିନ୍ନ ଧାରାରେ ଗତି କରିଥିଲା । ସେ ପର୍ଯ୍ୟନ୍ତ ଧରିନିଆ ଯାଇଥିଲା ଯେ ଆର୍ଯ୍ୟମାନଙ୍କ ତୁଳନାରେ ପ୍ରାକ୍-ଆର୍ଯ୍ୟ ଅଧିବାସୀମାନେ ଭାରତରେ ଅସଭ୍ୟ ଓ ବର୍ବରରୂପେ କାଳଯାପନ କରୁଥିଲେ ଏବଂ ଆର୍ଯ୍ୟମାନେ ହିଁ ଭାରତକୁ ନୂତନ ସଭ୍ୟତା ଆନୟନ କଲେ ବା ସୃଷ୍ଟି କଲେ ।

କିନ୍ତୁ ୧୯୩୧ ମସିହା ଭାରତୀୟ ଇତିହାସରେ ଏ ଧାରାକୁ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ କରିଦେଲା । ୧୯୩୧ ସାଲରେ ଯେତେବେଳେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ମୁଖ୍ୟ ସାର୍ ଜନ୍ ମାର୍ଶାଲଙ୍କର ବିବରଣୀ ପ୍ରକାଶ ପାଇଲା, ତାହା ଭାରତର ଇତିହାସକୁ ଆହୁରି ଆଉ ପାଞ୍ଚ ହଜାର ବର୍ଷ ପଛକୁ ନେଇଗଲା । ସେହି ବିବରଣୀର ମୁଖବନ୍ଧରେ ଜନ୍ ମାର୍ଶାଲ ଦେଇଥିବା ମନ୍ତବ୍ୟ ଅନୁଧାନ କଲେ ହିଁ ଏହାର ସତ୍ୟତା ଉପଲବ୍ଧି କରିହୁଏ । ଜନ୍ ଲେଖିଛନ୍ତି—

"ଏତେ ଦିନ ପର୍ଯ୍ୟନ୍ତ ସାଧାରଣତଃ ଧରିନିଆ ହେଉଥିଲା, ବିଜୟୀ ଆର୍ଯ୍ୟମାନଙ୍କ ତୁଳନାରେ ଭାରତବର୍ଷର ପ୍ରାକ୍-ଆର୍ଯ୍ୟ ଅଧିବାସୀମାନେ ସଭ୍ୟତାର ଏକାବେଳକେ ନିମ୍ନସ୍ତରରେ ପଡ଼ିଥିଲେ । ସ୍ପାର୍ଟାନ୍‌ମାନଙ୍କ ତୁଳନାରେ ହେଲଟ୍‌ମାନଙ୍କର ବା ବାଇଜାନ୍‌ଟାଇନ୍ ପ୍ରଭୁମାନଙ୍କ ତୁଳନାରେ ସ୍ଲାଭମାନଙ୍କର ଯେଉଁ ଦଶା, ବିଜୟୀ ଆର୍ଯ୍ୟମାନଙ୍କ ତୁଳନାରେ ଆର୍ଯ୍ୟ-ପୂର୍ବମାନଙ୍କର ମଧ୍ୟ ସେଇ ପ୍ରକାର ଦଶା । ସେ ଦଶା ଏପରି ହୀନ ଓ ପଦାନତ ଯେ ସେମାନେ 'ଦାସ' ବୋଲି ଉଲ୍ଲିଖିତ ହୋଇଛନ୍ତି । ଋଗ୍‌ବେଦ-ମନ୍ତ୍ରରୁ ସେମାନଙ୍କର ନିନ୍ଦାର୍ଥ ଏକ କୃଷ୍ଣଚର୍ମ ଖର୍ବନାସା ବର୍ବରର ଚିତ୍ର ସଂଗ୍ରହ କରାଯାଏ— ଭାଷା ଓ ଧର୍ମବିଶ୍ୱାସ ପରି ଶାରୀରିକ ବୈଶିଷ୍ଟ୍ୟରେ ସେମାନେ ସୁପୁରୁଷ ଆର୍ଯ୍ୟମାନଙ୍କ ତୁଳନାରେ ଅନେକ ନିକୃଷ୍ଟ । ଅବଶ୍ୟ ମଝିରେ ମଝିରେ ସ୍ପଷ୍ଟ ବୁଝାଯାଇଛି, ସେମାନେ ଗୋ-ସମ୍ପଦରେ ସମୃଦ୍ଧ ଏବଂ ଯୁଦ୍ଧରେ ପାରଦର୍ଶୀ ଥିଲେ ଏବଂ ସେମାନଙ୍କର ଅନେକ 'ପୁର' ଥିଲା । କିନ୍ତୁ ବେଦବିଦ୍‌ମାନେ ଏଇ 'ପୁର' କହିଲେ କୌଣସି ଏକ ରକମର ସାମୟିକ ଆଶ୍ରୟସ୍ଥଳ କିଁ ବୁଝୁଥିଲେ—ଅର୍ଥାତ୍ ସାଦା ମାଟିରେ ତିଆରି କୌଣସି ବ୍ୟବସ୍ଥା, ହୁଏ ତ ବେଡ଼ାରେ କିମ୍ବା ପଥରର କୌଣସି ପ୍ରକାର ଆଦିମ ପ୍ରାଚୀରଦ୍ୱାରା ଘେରା । କାହିଁକି ନା ଆର୍ଯ୍ୟମାନଙ୍କର ସେତେବେଳେ ମଧ୍ୟ ଗ୍ରାମ୍ୟାବସ୍ଥା, ସେମାନଙ୍କ ସମାଜ-ସଙ୍ଗଠନ ମଧ୍ୟ ସେଇ ଅନୁପାତରେ ଆଦିମ । ଅତଏବ ଏ କଥା କଳ୍ପନା କରିବା କଠିନ ଯେ ଆର୍ଯ୍ୟମାନଙ୍କଠାରୁ ମଧ୍ୟ ପ୍ରାଚୀନ ଭାରତବାସୀମାନେ—ଏଇ ଘୃଣ୍ୟ ଓ ନୀଚ ଦାସମାନେ— ସୁଗଠିତ ନଗର ବା ଦୁର୍ଗରେ ବାସ କରିପାରନ୍ତି ବା ଅନ୍ୟ କୌଣସି ଦିଗରୁ ସଭ୍ୟତାର ଉଚ୍ଚତର ସ୍ତରରେ ଉପନୀତ ହୋଇପାରନ୍ତି । ବିଜେତାମାନଙ୍କ ତୁଳନାରେ ସେମାନଙ୍କର ମାନସିକ, ଦୈହିକ,

ସାମାଜିକ ଓ ଧର୍ମମୂଳକ ନିକୃଷ୍ଟତାର କଥା ହିଁ ସ୍ୱତଃସିଦ୍ଧ ଥିଲା ଏବଂ ଭାରତୀୟ ସଭ୍ୟତାରେ ସେମାନଙ୍କର ବିଶେଷ କୌଣସି ଅବଦାନ ସ୍ୱୀକାର କରିବା ସମ୍ଭବ ହୋଇ ନାହିଁ । ଏକ ମୁହୂର୍ତ୍ତିକ ପାଇଁ ମଧ୍ୟ କଳ୍ପନାରେ ଆସେ ନାହିଁ ଯେ, ପାଞ୍ଚ ହଜାର ବର୍ଷ ଆଗରେ—ଏପରି କି ଆର୍ଯ୍ୟମାନଙ୍କ ନାମ ପର୍ଯ୍ୟନ୍ତ ଯେତେବେଳେ କି ଶୁଣାଯାଇ ନାହିଁ—ଭାରତବର୍ଷର ଆଉ କେଉଁଠି ହେଉ ଅବା ନ ହେଉ, ଅନ୍ତତଃ ପଞ୍ଜାବ ଓ ସିନ୍ଧୁପ୍ରଦେଶରେ ଏକ ଉନ୍ନତ ଓ ଏକାନ୍ତ ସ୍ୱକୀୟ ସଭ୍ୟତା ଗଢ଼ି ଉଠିଥିଲା । ତା ସହିତ ମେସୋପଟାମିୟା ଏବଂ ମିଶର ସଭ୍ୟତାର ସାଦୃଶ୍ୟ ଅତ୍ୟନ୍ତ ନିକଟ, ଯଦିଓ କୌଣସି କୌଣସି ଦିଗରୁ ତାହା ମେସୋପଟାମିୟା ଏବଂ ମିଶର ତୁଳନାରେ ଉନ୍ନତତର । ହରପ୍ପା ଓ ମହେଞ୍ଜୋଦାରୋ ଆବିଷ୍କାର ତର୍କାତୀତ ଭାବେ ଏହି କଥା ହିଁ ପ୍ରମାଣ କରିଛି । ତା' ଫଳରେ ବୁଝାଯାଇଛି, ଯୀଶୁ ଖ୍ରୀଷ୍ଟଙ୍କ ତିନି ହଜାର ବର୍ଷ ପୂର୍ବରୁ ବି ସିନ୍ଧୁ-ଉପତ୍ୟକାର ଅଧିବାସୀମାନେ ଏକ ସୁ-ଉନ୍ନତ ସଭ୍ୟତାର ବାହକ ଥିଲେ ଏବଂ ସେ ସଭ୍ୟତା ମଧ୍ୟରେ ଇଣ୍ଡୋ-ଆର୍ଯ୍ୟ ବା ବୃହଦ୍-ଆର୍ଯ୍ୟ ସଂସ୍କୃତିର ଚିହ୍ନମାତ୍ର ନାହିଁ ।......ଏ ସଭ୍ୟତାରେ ସମାଜ-ଜୀବନ ଥିଲା ନଗରକେନ୍ଦ୍ରିକ ଏବଂ କୃଷିକାର୍ଯ୍ୟ ଓ ବାଣିଜ୍ୟ ହିଁ ତାର ଐଶ୍ୱର୍ଯ୍ୟର ପ୍ରଧାନ ଉତ୍ସ । ଏଇ ବାଣିଜ୍ୟକ୍ଷେତ୍ର ନାନା ଦିଗରେ ଏବଂ ବହୁ ଦୂର ପର୍ଯ୍ୟନ୍ତ ପ୍ରସାରିତ ।......ଏସବୁ ଦିଗରୁ ସିନ୍ଧୁ-ସଭ୍ୟତା ସହିତ ପଶ୍ଚିମ ଏସିଆ ଓ ମିଶରର ତାମ୍ର-ପ୍ରସ୍ତର ସଭ୍ୟତାର ସାଧାରଣ ସାଦୃଶ୍ୟ ଅଛି । କିନ୍ତୁ ଅନ୍ୟାନ୍ୟ ଦିଗରୁ ସିନ୍ଧୁ-ସଭ୍ୟତା ଥିଲା ପଞ୍ଜାବ ଓ ସିନ୍ଧୁର ନିଜସ୍ୱ ବିଶିଷ୍ଟ ସଭ୍ୟତା ।......ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଉଲ୍ଲେଖ କରିହୁଏ ।......ଚାରୁଶିଳ୍ପ ଏବଂ ଧର୍ମ-ବିଶ୍ୱାସ ଦିଗରୁ ମଧ୍ୟ ସିନ୍ଧୁ-ସଭ୍ୟତାର ନିଜସ୍ୱ ବୈଶିଷ୍ଟ୍ୟ ସ୍ୱୀକାର-ଯୋଗ୍ୟ ।......ଅବଶ୍ୟ ସିନ୍ଧୁ ଅଧିବାସୀମାନଙ୍କର ଧର୍ମବିଶ୍ୱାସ

ସମ୍ଭବତ ଅନ୍ୟାନ୍ୟ ଦେଶବାସୀମାନଙ୍କର ବିଶ୍ୱାସରେ ନାନା ସାଦୃଶ୍ୟ ମଧ୍ୟ ଦେଖାଯାଏ । କିନ୍ତୁ ସାମଗ୍ରିକ ଭାବେ ସେମାନଙ୍କର ଧର୍ମବିଶ୍ୱାସ ଏପରି ଏକାନ୍ତ ଭାବରେ ଭାରତବର୍ଷୀୟ ଯେ ଏପରିକି ଆଜକାଲିର ହିନ୍ଦୁଧର୍ମ ସମ୍ଭବତ ଅନ୍ତତଃ ବର୍ତ୍ତମାନ ହିନ୍ଦୁଧର୍ମର ସର୍ବପ୍ରାଣବାଦ ଶୈବଧର୍ମ ଓ ଶାକ୍ତଧର୍ମ ସମ୍ଭବତ ସିନ୍ଧୁ ସଭ୍ୟତାର ଧର୍ମବିଶ୍ୱାସର ବିଶେଷ କୌଣସି ପାର୍ଥକ୍ୟ ନିର୍ଣ୍ଣୟ କରାଯାଏ ନାହିଁ । ସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଧର୍ମବିଶ୍ୱାସ କହିଲେ ଆଜି ମଧ୍ୟ ସେହି ଶିବ-ଉପାସନା ଏବଂ ମାତୃ-ଉପାସନା ହିଁ ପ୍ରଧାନ” ଇତ୍ୟାଦି ।

ଏଥିରୁ ଏହା ପ୍ରତିପାଦିତ ହେଉଛି ଯେ ସିନ୍ଧୁ-ସଭ୍ୟତା କେବଳ ସୁପ୍ରାଚୀନ ନୁହେଁ, ସୁ-ଉନ୍ନତ ମଧ୍ୟ ଥିଲ । ଏହା ବୈଦିକ ସାହିତ୍ୟଠାରୁ ଅନେକ ପ୍ରାଚୀନ । ଯେଉଁମାନେ ବେଦ ରଚନା କରିଥିଲେ, ସେମାନେ ଏ ସଭ୍ୟତା ଗଢ଼ି ନାହାନ୍ତି । ସିନ୍ଧୁ-ସଭ୍ୟତା ଏକାନ୍ତ ଭାବେ ଆର୍ଯ୍ୟ-ପୂର୍ବ ।

ଏହି ଆର୍ଯ୍ୟ-ପୂର୍ବ ସଭ୍ୟତାରେ ଯେଉଁମାନେ ଭାରତରେ ବାସ କରୁଥିଲେ ଏବଂ ସେମାନଙ୍କର ଯେଉଁସବୁ ନିଦର୍ଶନ ମିଳିଛି, ସେହି ବହୁ ଶତାବ୍ଦୀବ୍ୟାପୀ ଯୁଗକୁ ପୂର୍ଣ୍ଣ ଚାରି ଭାଗରେ ବିଭକ୍ତ କରାଯାଇଛି । ପ୍ରାଚୀନ ପ୍ରସ୍ତର ଯୁଗ, ନୂତନ ପ୍ରସ୍ତର ଯୁଗ, ପ୍ରାକ୍-ଆର୍ଯ୍ୟ ବା ଆର୍ଯ୍ୟ-ପୂର୍ବ ବା ପ୍ରାଗୈତିହାସିକ ଯୁଗ (ଏଥିରେ ସିନ୍ଧୁ-ସଭ୍ୟତା ଅନ୍ତର୍ଭୁକ୍ତ), ତା’ ପରେ ଐତିହାସିକ ଯୁଗ । ଅର୍ଥାତ୍ ଏହି ଯୁଗକୁ ଆର୍ଯ୍ୟ ସଭ୍ୟତାର ଯୁଗ ବା ବୈଦିକ ଯୁଗ ବୋଲି ନାମିତ କରାଯାଇଛି । କାରଣ ଏ ଯୁଗର ଆଚାର-ବ୍ୟବହାର, ଧ୍ୟାନ-ଧାରଣାର ଉଲ୍ଲେଖମାନ ଉପାଦାନ ରହିଛି ।

---

# ଏହି ଯୁଗ ଆଲୋଚନାର ବୈଜ୍ଞାନିକ ଧାରା

ପ୍ରାଚୀନ ପ୍ରସ୍ତରଯୁଗର ନିଦର୍ଶନର ତଥ୍ୟମୂଳକ ଆଲୋଚନାର ତଥ୍ୟ ଯେଉଁ ବୈଜ୍ଞାନିକ ଗବେଷଣା ଫଳରେ ଜଣାଯାଏ, ତାହା ବର୍ତ୍ତମାନ ସୁବିଦିତ । ଭୂତତ୍ତ୍ୱ, ପ୍ରତ୍ନତତ୍ତ୍ୱ, ନୃତତ୍ତ୍ୱ—ଏଇ ତିନୋଟି ବୈଜ୍ଞାନିକ ବିଭାଗ ଜରିଆରେ କୌଣସି ଦେଶର ଅଧିବାସୀମାନଙ୍କର ଜୀବନଯାତ୍ରାର ରୂପ ଆମେ ଜାଣିପାରୁ ।

ଭୂତତ୍ତ୍ୱ ବିଦ୍ୟା କହେ, କେଉଁ ସମୟରେ, କେଉଁ ଭୂଖଣ୍ଡରେ ମନୁଷ୍ୟର ପ୍ରାକୃତିକ ପରିବେଶ କିପରି ଥିଲା । ସେଇ ଭୂସ୍ତରରେ ମିଳୁଥିବା ଜୀବନର ହାଡ଼ଗୋଡ଼, ଖପୁରି ଇତ୍ୟାଦି ନେଇ ଗବେଷଣା କରେ ପ୍ରତ୍ନତତ୍ତ୍ୱ ବିଦ୍ୟା । ତା ପରେ ନୃତତ୍ତ୍ୱର ବିବିଧ ଶାଖା ସ୍ଥିର କରେ, କେଉଁ ମନୁଷ୍ୟ କିପରି ଦେହ ଧାରଣ କରିଥିଲା ଓ କେଉଁପରି ଜୀବିକା ଯୋଗୁ ତାହାର ଅବୟବ ଏପରି ଗଠିତ ହୋଇଥିଲା । ପୁରାତତ୍ତ୍ୱ ପ୍ରାଚୀନ କାଳର ମନୁଷ୍ୟର ଧ୍ୱଂସ ସ୍ତୂପ, ଭୂଗର୍ଭ ଓ ଗୁହାଗହ୍ୱରର ଲୁପ୍ତ ଓ ଲୁକ୍କାୟିତ ସାକ୍ଷ୍ୟ ଖୋଜି ବାହାର କରିଥାଏ ।

ଏସବୁ ସହିତ ଜାତିତତ୍ତ୍ୱ ବିଦ୍ୟାର ଗବେଷଣା ବର୍ତ୍ତମାନ ମନୁଷ୍ୟ ଦେହର ମୁଣ୍ଡ, ଆଖି, ନାକ, କପାଳ ଇତ୍ୟାଦି ନାନା ଅବୟବର ମାପଚୁପ କରି ତାହାର ମୌଳିକ ବିବିଧ ଗଠନ ବିଶ୍ଳେଷଣ କରି, ସେହି ଦେହ-ପରିମାପ-ବିଦ୍ୟାର ଗବେଷଣାରୁ

ତା ପରେ ପୁରାତତ୍ତ୍ୱର ପ୍ରମାଣ ସହିତ ମିଶାଇ ଦେଖା ଇବାଏ ପ୍ରାଚୀନ ମନୁଷ୍ୟର ଅନୁରୂପ ଦେହାବଶେଷର ସଙ୍କେତ । ସମାଜତତ୍ତ୍ୱ ବିଦ୍ୟା ଆଧୁନିକ ଅନଗ୍ରସର ଓ ଅଗ୍ରସର ମାନବଗୋଷ୍ଠୀର ରୀତିନୀତି, ଆଚାର ବିଚାରକୁ ଠିକଣାଖି ଭାବେ ବିଶ୍ଳେଷଣ କରି ତାହାର ଆଦିମ ରୂପକୁ ଆବିଷ୍କାର କରେ । ଏପରି କି ଏ ଭାବରେ ଭାଷାତତ୍ତ୍ୱ ମଧ୍ୟ ମନୁଷ୍ୟର ପ୍ରାଚୀନ ସଂସ୍କୃତି ଉପରେ ଆଲୋକପାତ କରିଥାଏ ।

ଏହିସବୁ ବିଜ୍ଞାନ ଯୋଗୁ ଯେ କୌଣସି ସଂସ୍କୃତି ସମ୍ପର୍କରେ ନିର୍ଭରଯୋଗ୍ୟ ତଥ୍ୟରୁ ଆଜ ମାନବ ଜାତିର କ୍ରମଗତି ପରିସ୍ଫୁଟ । ଅବଶ୍ୟ ଏହି ସମସ୍ତ ବିଜ୍ଞାନର ପ୍ରତ୍ୟେକ ଶାଖାର ପ୍ରମାଣ ପ୍ରତ୍ୟେକ କ୍ଷେତ୍ରରେ ପରସ୍ପରର ପରିପୋଷକ ହୋଇଥାଏ । ତଥାପି ପ୍ରତ୍ୟେକ ବିଜ୍ଞାନର ଆବିଷ୍କାର ଓ ପ୍ରମାଣସମୂହକୁ ମିଶାଇ ପାଠକଲେ ପ୍ରାଚୀନ ଯୁଗର ଗୋଟିଏ ଯୁକ୍ତିସଙ୍ଗତ ଓ ବୋଧଗମ୍ୟ ଚିତ୍ର ମିଳି-ଥାଏ (୭) ।



# ଭାରତରେ ପ୍ରାଚୀନ ପ୍ରସ୍ତର ଯୁଗ

ପୃଥିବୀର ପ୍ରସ୍ତରଯୁଗର କାଳ ନିରୂପଣ ଭିତରେ ଭୂତାତ୍ତ୍ୱିକମାନେ ଯେଉଁ ଉପାଦାନ ଓ ତଥ୍ୟ ପରିବେଷଣ କରିଥାନ୍ତି, ସେପରି ପ୍ରସ୍ତରର ନିଦର୍ଶନ ଭାରତବର୍ଷରେ ମିଳିବା ପରେ, ସେ ସମ୍ପର୍କରେ ଭାରତରେ ପ୍ରାଚୀନ ପ୍ରସ୍ତର ଯୁଗର ଏକ ସ୍ଥୂଳ ଚିତ୍ର ଆମ ଆଗରେ ପହଞ୍ଚୁଛି । ଭାରତର ଉତ୍ତର-ପଶ୍ଚିମ ଅଂଶ (ବର୍ତ୍ତମାନ ପାକିସ୍ଥାନ, ଶିବାଲିକ୍ ଅଞ୍ଚଳ ଓ ହିମାଳୟ) ମଧ୍ୟଭାରତ ଓ ଦକ୍ଷିଣ ଭାରତର ଲୁପ୍ତ ନଦୀ ବା ପର୍ବତକନ୍ଦରରୁ ହତିଆରସମୂହ ମିଳିଛି । ଏହି ଅସ୍ତ୍ରଶସ୍ତ୍ର ମଧ୍ୟରୁ ବହୁ ପରିମାଣରେ ମିଳିଛି ଊର୍ଦ୍ଧ୍ୱ-ଶିବାଲିକ୍ ଶୈଳ ସ୍ତରରେ । ଏହାକୁ "ପ୍ରାକ୍-ସୋୟାନ ପ୍ରସ୍ତର" ଶିଳ୍ପ ବୋଲି କୁହାଯାଏ । ଏହା ପରେ ଉତ୍ତରରେ ସିନ୍ଧୁ ଓ ସୋୟାନ ନଦୀର ଉପତ୍ୟକାରେ, ଦକ୍ଷିଣରେ ନର୍ମଦା ଓ ଦାକ୍ଷିଣାତ୍ୟର ଶୈଳ ସ୍ତରରେ । ଗୋଟିଏ ସୋୟାର୍ନ-ଉପକରଣ ନାମରେ ଓ ଅନ୍ୟଟି "କାରବାସ-ଉପକରଣ" ନାମରେ ଅଭିହିତ ହୋଇପାରେ । ଉଭୟ ହିଁ ପ୍ରାଚୀନ ପ୍ରସ୍ତର ଯୁଗର ପ୍ରମାଣ । ଦାକ୍ଷିଣାତ୍ୟରେ ଏପରି ପ୍ରାଚୀନ ପ୍ରସ୍ତର ଯୁଗର ନିଦର୍ଶନ ଚିଙ୍ଗଲପୁଟ ଏବଂ ନବୀନ ପ୍ରସ୍ତର ଯୁଗର ନିଦର୍ଶନ ଦକ୍ଷିଣର ବେଲାରୀ ଜିଲ୍ଲାରେ ଓ ଉତ୍ତର ପ୍ରଦେଶର ମିର୍ଜାପୁରର ପ୍ରାଗୈତିହାସିକ ଆବିଷ୍କାର ଉପାଦାନରେ ଦେଖାଯାଏ । ଏହିପରି ଗୋଟିଏ ଗୋଟିଏ ସ୍ତର ମଧ୍ୟରେ କେତେ ସୁଦୀର୍ଘ ବିପୁଳ ପ୍ରାକୃତିକ ବିପର୍ଯ୍ୟୟ, ଭୂତାତ୍ତ୍ୱିକ ପରିବର୍ତ୍ତନ ଘଟିଅଛି, ତାହା ମନେରଖିବା ପ୍ରୟୋଜନ । ପ୍ରାଚୀନ ପ୍ରସ୍ତର ଯୁଗଠାରୁ ନୂତନ ପ୍ରସ୍ତର ଯୁଗର ଶେଷ ପର୍ଯ୍ୟନ୍ତ "ହସ୍ତ-କୁଠାର

ସଭ୍ୟତା" (Hand-Axe Culture)ର ନିଦର୍ଶନ କାଶ୍ମୀରରେ ଓ ଉତ୍ତର-ପଶ୍ଚିମ ଭାରତରେ ମଧ୍ୟ ଯଥେଷ୍ଟ ଆବିଷ୍କୃତ ହୋଇଛି । ଏହିସବୁ ପ୍ରାପ୍ତ ଉପାଦାନରୁ ତତ୍‌କାଳୀନ ଯୁଗର ମନୁଷ୍ୟର ଜୀବିକା ଓ ଜୀବନର ଏକ ଅସ୍ପଷ୍ଟ ଆଭାସ ମିଳୁଛି ।

କାଶ୍ମୀରର ଶ୍ରୀନଗର ନିକଟସ୍ଥ ବୁର୍ଜାହୋମ ନାମକ ସ୍ଥାନର 'ବୃହତ-ପ୍ରସ୍ତର' ନିଦର୍ଶନଗୁଡ଼ିକରେ ମିଳୁଛି । ଏହି କାଳର ପରବର୍ତ୍ତୀ ମୋଡ଼ାମାଟି ଉପରେ କଳା ବା ବାର୍ଣ୍ଣିସ କରାଯାଇଥିବା (Ceramic Ware) ଜିନିଷ—ଠିକ୍ ଯେପରି ମହେଞ୍ଜୋଦାରୋରେ ମିଳୁଛି ।

ନୂତନ ପ୍ରସ୍ତର ଯୁଗର ସଭ୍ୟତା ଭାରତବର୍ଷରେ ଯେଉଁ ତାମ୍ରଯୁଗରେ ଉତ୍ତୀର୍ଣ୍ଣ ହୋଇଅଛି, ତାହା ସେଇ କାଶ୍ମୀର ଓ ସିନ୍ଧୁ-ଉପତ୍ୟକାରୁ ମିଳିଥିବା ନିଦର୍ଶନରୁ ଦେଖାଯାଏ । ସେହିପରି ଏହି ନିଦର୍ଶନଗୁଡ଼ିକରୁ ବୁଝାଯାଇଛି ଯେ, ନବ୍ୟ ପ୍ରସ୍ତର ଯୁଗର ମନୁଷ୍ୟମାନେ ପ୍ରଥମେ ଉତ୍ତର-ପଶ୍ଚିମ ଓ ସିନ୍ଧୁ ଉପତ୍ୟକା ଏବଂ କ୍ରମେ ସେମାନେ ମଧ୍ୟ-ଦକ୍ଷିଣସ୍ଥ ନର୍ମଦା ଉପତ୍ୟକା ଓ ଦକ୍ଷିଣାପଥର ଉପର ଦେଇ ଭାରତବର୍ଷରେ ବ୍ୟାପି ଯାଇଥିଲେ (୮) ।

# ଭାରତର ଆଦ୍ୟ ମଣିଷ ଗୋଷ୍ଠୀ

ଜାତିତତ୍ତ୍ୱ ଓ ଭାଷାତତ୍ତ୍ୱ ଜରିଆରେ ଆମେ ଅଷ୍ଟ୍ରିକ ବା ଆଦ୍ୟ-ଅଷ୍ଟ୍ରାଲେଏଡ଼ମାନଙ୍କ ସଭ୍ୟତାର ପ୍ରମାଣ ପାଉ । ଭାଷାତତ୍ତ୍ୱରୁ ଜଣାଯାଏ ଯେ, ଆମ ଭାଷାମାନଙ୍କରେ ଅଷ୍ଟ୍ରିକଗୋଷ୍ଠୀର ସେଇସବୁ ଦ୍ରବ୍ୟର 'ଶବ୍ଦ' ରହିଛି ତେଣୁ ଅଷ୍ଟ୍ରିକଗୋଷ୍ଠୀର ମନୁଷ୍ୟମାନଙ୍କର ସେହିସବୁ ଜିନିଷ ସହିତ ପରିଚୟ ହୋଇଥିଲା ସର୍ବ ପ୍ରଥମେ । ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଶ୍ରୀଯୁକ୍ତ ସୁନୀତିକୁମାର ଚାଟର୍ଜୀ ଭାରତର ଏହି ଆଦ୍ୟ ମଣିଷ ଗୋଷ୍ଠୀର ସଭ୍ୟତାର ବସ୍ତୁ ଉପକରଣର ବର୍ଣ୍ଣନା ଦେଇ ଲେଖିଛନ୍ତି—"ଅଷ୍ଟ୍ରିକ ଜାତୀୟ ଲୋକମାନେ ଭାରତରେ ପ୍ରଥମ କୃଷି କାର୍ଯ୍ୟ ଓ ତଦ୍‌ଅବଲମ୍ବନରେ ସଙ୍ଘବଦ୍ଧ ସୁସଭ୍ୟ ଜୀବନର ପତ୍ତନ କଲେ । ସେମାନେ ଧାନ, ପାନ ଓ ନାରିକେଳର ଚାଷ କରୁଥିଲେ । ପାହାଡ଼ ସଫାକରି ଧାନକ୍ଷେତ ପ୍ରସ୍ତୁତ କରୁଥିଲେ ।......ଲଙ୍ଗଳପାଇଁ ତୀକ୍ଷ୍ଣ କାଷ୍ଠଖଣ୍ଡ ବ୍ୟବହାର କରୁଥିଲେ । ଧନୁର୍ବାଣ ଏମାନଙ୍କର ପ୍ରଧାନ ଅସ୍ତ୍ର ଥିଲା ।......କେତେକ ଗଡ଼କାଠ ବାନ୍ଧି ଭେଳା ଆକାରରେ ତିଆରି ବଡ଼ ବଡ଼ ନୌକାରେ ସେମାନେ ବଡ଼ ବଡ଼ ନଦୀ, ଏପରିକି ସାଗର ମଧ୍ୟ ପାରି ହେଉଥିଲେ ।" ଏହି ତଥ୍ୟାବଳୀରୁ ଜଣାଯାଏ ଯେ, ଏହା "ନବ୍ୟପ୍ରସ୍ତର ଯୁଗ"ର "ବର୍ବର-ଜୀବନ"ର କଥା । ବର୍ତ୍ତମାନର ଆଦିବାସୀ ବଂଶଧରଙ୍କ ମଧ୍ୟରେ ଆଜି ମଧ୍ୟ ସେମାନଙ୍କର ସେଇସବୁ ଦ୍ରବ୍ୟର ମୂଳରୂପ ରକ୍ଷିତ ହୋଇ ଆସିଛି ।

ସେମାନଙ୍କର ମାନସିକ ରୂପ ସମ୍ପର୍କରେ ଶ୍ରୀଯୁକ୍ତ ଚାଟର୍ଜୀ ମହାଶୟ ଯେଉଁ ଆଭାସ ଦେଇଛନ୍ତି ତା ହେଉଛି—"ସେମାନେ

ମନୁଷ୍ୟର ଏକାଧିକ ଆତ୍ମାରେ ବିଶ୍ୱାସ କରୁଥିଲେ—ମନୁଷ୍ୟର ମୃତ୍ୟୁପରେ ତାହାର ଆତ୍ମା ଗଛରେ, ପାହାଡ଼ରେ ଅଥବା ଅନ୍ୟ ଜୀବଜନ୍ତୁଙ୍କ ଭିତରେ ପ୍ରବେଶ କରେ, ଏହିପରି ଧାରଣା ହିଁ ସେମାନଙ୍କର ଥିଲା । ପରବର୍ତ୍ତୀକାଳରେ ଏହି ମାନଙ୍କୁ ନେଇ ହିନ୍ଦୁଜାତି ସୃଷ୍ଟି ହେବା ପରେ, ହିନ୍ଦୁମାନଙ୍କ ମଧ୍ୟରେ ଉଦ୍ଭୂତ ପୁନର୍ଜନ୍ମ ବାଦରେ ପରିଣତ ହେଲା । ଶ୍ରାଦ୍ଧର ଅନୁରୂପ ରୀତି—ମୃତକୁ ମଝିରେ ମଝିରେ ଆହାର୍ଯ୍ୟଦାନ—ଏମାନଙ୍କ ମଧ୍ୟରେ ଥିଲା ବୋଲି ମନେହୁଏ । ମୃତକୁ ଏମାନେ ହୁଏତ ବୃକ୍ଷ-ସମାଧି ଦେଉଥିଲେ, ଅର୍ଥାତ କପଡ଼ା ବା ବକ୍‌ଳରେ ଘୋଡ଼ାଇ ବୃକ୍ଷସ୍କନ୍ଧରେ ମୃତଦେହ ରଖି ଦେଉଥିଲେ; ଅଥବା ଭୂଗର୍ଭରେ ପ୍ରୋଥିତ କରି ସମାଧି ଉପରେ ଦୀର୍ଘକାୟ ପ୍ରସ୍ତରଖଣ୍ଡ ଠିଆ କରାଇ ପୋତି ଦେଉଥିଲେ ।······ଉତ୍ତର ଭାରତର ଗଙ୍ଗାତୀରରେ ପ୍ରଥମତଃ ଏଇ ଅଷ୍ଟ୍ରିକ ଜାତିର ଲୋକମାନେ ହିଁ ବାସ କରୁଥିଲେ । ସେଠାରେ ଏମାନେ କୃଷିମୂଳକ ଗୋଟାଏ ସଂସ୍କୃତି ଗଢ଼ି ତୋଳିଥିଲେ । 'ଗଂଗା' ଏଇ ନାମଟି ଅଷ୍ଟ୍ରିକ ଭାଷାର ଶବ୍ଦ ବୋଲି ଅନୁମିତ ହୁଏ । ଏମାନଙ୍କର କୃଷିମୂଳକ ସଂସ୍କୃତି ହିଁ ଭାରତର ସଭ୍ୟତାର ମୌଳିକ ଆଧାର ବା ଭିତ୍ତି ।"

ଏହିଥିରୁ ଆମେ ଭାରତର ଆଦ୍ୟ ମାନବ ଗୋଷ୍ଠୀଙ୍କ ସମ୍ପର୍କରେ ମୋଟାମୋଟି ଗୋଟାଏ ଧାରଣା କରିପାରୁ ଯେ, କୃଷିକାର୍ଯ୍ୟ ସେହି କାଳରୁ ହିଁ ଏକ ଅନୁନ୍ନତ ଅବସ୍ଥାରେ ଆରମ୍ଭ ହୋଇଥିଲା ।

ତା'ପରେ ଧାତବ ଯୁଗର ଆରମ୍ଭ ହେଲା ଏବଂ କ୍ରମେ କୃଷି-କ୍ଷେତ୍ରକୁ କେନ୍ଦ୍ର କରି ଗ୍ରାମ ଗଢ଼ି ଉଠିଲା । ଦୀର୍ଘ ଦିନର ବ୍ୟବଧାନ ପରେ କୃଷିଜୀବୀଙ୍କ ମଧ୍ୟରୁ ପ୍ରୟୋଜନ ଅନୁଯାୟୀ କାରିଗର ସୃଷ୍ଟି

ହୋଇଥିବେ । କୃଷିର ଆଦାନପ୍ରଦାନ ହୋଇଥିବ ଓ କ୍ରମେ ପୌର-କେନ୍ଦ୍ର ଗଢ଼ି ଉଠିଥିବ ।

କୃଷି ସମାଜର ଜୀବନଯାତ୍ରା କେତେକାଂଶରେ ଅଗ୍ରସର ହେଲେ ହିଁ ଏହିପରି ନଗରର ସୃଷ୍ଟି ହେବା ସମ୍ଭବ ।

ପ୍ରସ୍ତର ଯୁଗର ଶେଷ ବେଳକୁ ଯେତେବେଳେ ଧାତୁର ବ୍ୟବହାର ମଣିଷ ଶିଖି ତାହା ପ୍ରୟୋଗ କରିବାକୁ ଆରମ୍ଭ କଲା ସେତେବେଳେ ସେମାନେ ତାମ୍ର ଓ ଲୌହ ଉପକରଣ ବ୍ୟବହାର କରିଛନ୍ତି—ଏହାହିଁ ଭାରତର ତାମ୍ର-ପ୍ରସ୍ତର (Chalcolithic)ଯୁଗ । ମଝିରେ ବ୍ରୋଞ୍ଜ ଯୁଗର କୌଣସି ନିଦର୍ଶନ ଏ ପର୍ଯ୍ୟନ୍ତ ଭାରତରୁ ମିଳିନାହିଁ । କିନ୍ତୁ ଏହି ଧାତୁ ବ୍ୟବହାର ପରେ ଭାରତରେ କୃଷି ସଭ୍ୟତାର ଦ୍ୱିତୀୟ ସ୍ତରର ସୂଚନା ସୃଷ୍ଟି ହୋଇଅଛି ।

ହରପ୍ପା ଓ ମହେଞ୍ଜୋଦାରର ଆବିଷ୍କାର ଭାରତବର୍ଷର ପ୍ରାଚୀନ କାଳରେ ଲୁପ୍ତ ଅଧ୍ୟାୟକୁ ଆମମାନଙ୍କ ସମ୍ମୁଖରେ ଖୋଲି ଦେଇଛି ।

---

# ହରପ୍ପା ଓ ମହେଞ୍ଜୋଦାର ବା ସିନ୍ଧୁ ସଭ୍ୟତା

ହରପ୍ପା ଓ ମହେଞ୍ଜୋ-ଦାରର ଖନନ ପରେ ସେଠାରୁ ମିଳିଥିବା ଉପାଦାନସମୂହ ଭାରତ ଇତିହାସର ପୂର୍ବ ଧାରଣାକୁ ଆମୂଳ ପରିବର୍ତ୍ତନ କରିଦେଲା । ଏହି ଖନନ କାର୍ଯ୍ୟ ପରେ ସେଠାରୁ ମିଳିଥିବା ଉପାଦାନସମୂହକୁ ନେଇ ଗବେଷଣା ଏତେ କାଳ ହେଲା ଚାଲି ଆସିଛି । ତାହାର ନିର୍ଭରଯୋଗ୍ୟ ଗବେଷଣାର ତଥ୍ୟ ମିଳେ ଗର୍ଡନଚାଇଲଡ୍, ଏମ୍ ହୁଇଲର ଓ ପିଗଟ୍‌ଙ୍କ ଗ୍ରନ୍ଥାବଳୀରୁ (୯) ।

ଏହି ଗବେଷଣାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ସିନ୍ଧୁ ସଭ୍ୟତା ଆର୍ଯ୍ୟ-ପୂର୍ବ ଥିଲା । ମାର୍ଶାଲ କହିଛନ୍ତି, ସିନ୍ଧୁ ସଭ୍ୟତାକୁ ବୈଦିକ ମନୁଷ୍ୟମାନଙ୍କ କୀର୍ତ୍ତି କୁହାଯିବ କି ନାହିଁ—ଏ ବିଷୟରେ ନୃତତ୍ତ୍ୱ-ମୂଳକ ତଥ୍ୟ ଉପରେ ନିର୍ଭର କରିବାର ଅନେକ ବାଧା ଅଛି; କାରଣ କି ନା ବୈଦିକ ମନୁଷ୍ୟମାନଙ୍କର ଶରୀରଗଠନ ସଂକ୍ରାନ୍ତ କୌଣସି ସୁନିଶ୍ଚିତ ପ୍ରମାଣ ନାହିଁ ଏବଂ ମହେଞ୍ଜୋଦାରରୁ ମିଳିଥିବା ମଣିଷର ଦେହାବଶେଷ ମଧ୍ୟ ଏ ପ୍ରଶ୍ନ ଉପରେ ବିଶେଷ କୌଣସି ଆଲୋକପାତ କରେ ନାହିଁ; କିନ୍ତୁ ସଭ୍ୟତା-ସଂସ୍କୃତି ଦିଗରୁ ବୈଦିକ ମନୁଷ୍ୟମାନଙ୍କ ସହିତ ସିନ୍ଧୁ-ଅଧିବାସୀମାନଙ୍କର ତୁଳନା କଲେ ସ୍ପଷ୍ଟ ବୁଝାଯାଏ ଯେ ଉଭୟଙ୍କ ମଧ୍ୟରେ କୌଣସି ସମ୍ପର୍କ ଥିବା ସମ୍ଭବ ନୁହେଁ । ଅର୍ଥାତ୍ ବୈଦିକ ସାହିତ୍ୟରେ ପ୍ରତିଫଳିତ ସାଂସ୍କୃତିକ ଅବସ୍ଥା ସହିତ ପ୍ରତ୍ନତତ୍ତ୍ୱ-ପ୍ରମାଣିତ ସିନ୍ଧୁ ସଭ୍ୟତାର ତୁଳନା କଲେ ଉଭୟ ମଧ୍ୟରେ ଏପରି

ମୌଳିକ ପ୍ରଭେଦ ରହିଛି ଯେ, ସିନ୍ଧୁ ସଭ୍ୟତାକୁ କେବେ ହେଲେ ବୈଦିକ ମନୁଷ୍ୟମାନଙ୍କର ଶାଖି ମନେକରାଯାଇପାରିବ ନାହିଁ । (୧୦)

ଏହି ସିନ୍ଧୁ ସଭ୍ୟତାକୁ ଦୁଇଟି ଭାଗରେ ବିଭକ୍ତ କରି ଦେଖାଯାଇଛି । ଅର୍ଥାତ୍ କାଳ ହିସାବରେ ମହେଞ୍ଜୋଦାରୋ ପୂର୍ବରୁ ହରପ୍ପାର ଜନ୍ମ ।

ଆବିଷ୍କାରରୁ ଜଣାଯାଏ ଯେ, ହରପ୍ପା ସଭ୍ୟତାର ଯେଉଁ ସାମାଜିକ ବିନ୍ୟାସ ତାହା ମହେଞ୍ଜୋଦାରୋର ସାମାଜିକ ବିନ୍ୟାସଠାରୁ ଉନ୍ନତତର । ଉଭୟ ସ୍ଥାନର ଆବିଷ୍କୃତ ବସ୍ତୁସମୂହର ତଥ୍ୟକୁ ମିଳାଇ ମାର୍ଟିମାର ହୁଇଲର ହରପ୍ପା ସଭ୍ୟତାର କାଳ ନିରୂପଣ କରିଛନ୍ତି, ଖ୍ରୀଷ୍ଟପୂର୍ବ ୨୫୦୦ ଠାରୁ ଖ୍ରୀଷ୍ଟପୂର୍ବ ୧୫୦୦ ପର୍ଯ୍ୟନ୍ତ (୧୧) । ସିନ୍ଧୁ ସଭ୍ୟତାର ବିକାଶଧାରା ଲକ୍ଷ୍ୟ କରି ସେ ମନେ କରନ୍ତି ଯେ—ସିନ୍ଧୁ ସଭ୍ୟତାର ଗତିବେଗ ଧୀର । ଏହି ପ୍ରମାଣାବଳୀକୁ କେନ୍ଦ୍ର କରି ସେ କହନ୍ତି ଯେ—ଏଇ ସଭ୍ୟତା ସ୍ରଷ୍ଟାମାନଙ୍କ ପୂର୍ବରୁ ଯେଉଁମାନେ ଏଇ କେନ୍ଦ୍ରରେ ବାସ କରୁଥିଲେ ସେମାନେ ପଲ୍ଲୀ ବା କ୍ଷୁଦ୍ର ନଗରବାସୀ ଥିଲେ । ସେମାନଙ୍କ ପାତ୍ରାଦିରୁ ଏହି ପରିଣତ ହରପ୍ପା ସଭ୍ୟତାର ତୁଳନାରେ ସେମାନେ ଭିନ୍ନ ଜାତିର ବା ଭିନ୍ନ ଗୋଷ୍ଠୀର ବୋଲି ମନେ ହୁଅନ୍ତି । ହରପ୍ପାର 'ଏଚ୍' ସମାଧିସ୍ଥଳୀ ଓ 'ଆର-୩୭' ସମାଧିସ୍ଥଳୀରୁ ପ୍ରାପ୍ତ ପାତ୍ରାଦି ଓ ପଶ୍ଚିମସ୍ଥ ପୁରବେଶ ଉପରର ନିକୃଷ୍ଟ ଧରଣର ଗୃହାଦିରୁ ବୁଝାଯାଏ ଯେ, ଏହା ମଧ୍ୟ ସେଇ ହରପ୍ପାର ପରିଣତ ସଭ୍ୟତାର ଅଧିବାସୀମାନଙ୍କର ନୁହେଁ—କୌଣସି ଆଗନ୍ତୁକ ଗୋଷ୍ଠୀର । ଏହି ଆଗନ୍ତୁକମାନେ "ଆର୍ଯ୍ୟ ଆକ୍ରମଣକାରୀ" ହୋଇପାରନ୍ତି—ଗର୍ଡ଼ନ ଚାଇଲଡ଼

୧୯୩୪ରେ ଏହି ଅନୁମାନ କରିଥିଲେ । ମହେଞ୍ଜୋଦାରୋର ଧ୍ୱଂସସ୍ତୂପରୁ ମୃତ ଦେହର ଅବସ୍ଥାରୁ ସେହିପରି ଆକ୍ରମଣ ଓ ବିପର୍ଯ୍ୟୟର ଆଭାସ ମିଳେ ।

ସିନ୍ଧୁ ସଭ୍ୟତାରୂପେ ପ୍ରତିଷ୍ଠିତ ଦୁଇଟି ସ୍ଥାନ ହରପ୍ପା ଓ ମହେଞ୍ଜୋଦାରୋ ଉଭୟ ସ୍ଥାନର ଆବିଷ୍କାର ତଥା ସଂଗୃହୀତ ତଥ୍ୟାବଳୀ ପ୍ରମାଣ କରେ ଯେ, ହରପ୍ପା ଅପେକ୍ଷା ମହେଞ୍ଜୋଦାରୋ ଧ୍ୱଂସଲୀଳାରେ କମ୍ କ୍ଷତିଗ୍ରସ୍ତ ।

ଏ ପର୍ଯ୍ୟନ୍ତ ହରପ୍ପାର ଉଦ୍ଭାବିତ ଲିପିମାଳା ପାଠ କରାଯାଇନାହିଁ । ତଥାପି ଆବିଷ୍କୃତ ତଥ୍ୟାବଳୀ ଭାରତୀୟ ସଂସ୍କୃତିର ଇତିହାସରେ ଏକ ଯୁଗାନ୍ତର ଆଣିଦେଇଛି ।

ହରପ୍ପା ସଂସ୍କୃତି ହେଉଛି ଭାରତୀୟ ସଂସ୍କୃତିର ପ୍ରାଚୀନତମ ରୂପ । କିନ୍ତୁ ଏ ସଂସ୍କୃତି ଧ୍ୱଂସ ପାଇଥିବା କଥା ମହେଞ୍ଜୋଦାରୋରୁ ମିଳିଥିବା ନରନାରୀଙ୍କର ମୃତ ଦେହର ପତିତ ଅବସ୍ଥାରୁ ହିଁ ଜଣାଯାଇଛି ।

ହରପ୍ପା ଏବଂ ମହେଞ୍ଜୋଦାରୋରୁ ମିଳିଥିବା କଙ୍କାଳ, ମୁଣ୍ଡର ଖପୁରି ଓ ହାଡ଼ର ଅଂଶକୁ ନୃତତ୍ତ୍ୱମୂଳକ ଏବଂ ଅସ୍ଥିବିଦ୍ୟାମୂଳକ ବିଚାର-ବିଶ୍ଳେଷଣ କରି ମୋଟ ଉପରେ ଚାରୋଟି ଜାତିର ମନୁଷ୍ୟଙ୍କ ପରିଚୟ ମିଳିଅଛି; ସେମାନଙ୍କ ମଧ୍ୟରେ କେଉଁମାନେ ଥିଲେ ପ୍ରକୃତ ସିନ୍ଧୁ-ଅଧିବାସୀ ଆଉ କେଉଁମାନେ ଆଗନ୍ତୁକ ମାତ୍ର ସେ କଥା ମଧ୍ୟ ସ୍ପଷ୍ଟ ନୁହେଁ । (୧୩) । ତା ବ୍ୟତୀତ ଏ ଜାତୀୟ ଅସ୍ଥିବିଦ୍ୟାମୂଳକ ବିଶ୍ଳେଷଣରୁ ପ୍ରାଚୀନ ମନୁଷ୍ୟମାନଙ୍କର ଜାତିଗତ ବୈଶିଷ୍ଟ୍ୟ ଏକାନ୍ତ ଅନୁମେୟ କି ନା—ସେ ବିଷୟରେ ସଂଶୟ ବ୍ୟକ୍ତ ହୋଇଛି । ତେଣୁ ଗବେଷଣାର ବର୍ତ୍ତମାନ ପର୍ଯ୍ୟାୟରେ

ସିନ୍ଧୁ-ଅଧିବାସୀମାନଙ୍କୁ କୌଣସି ଏକ ସୁନିର୍ଦ୍ଦିଷ୍ଟ ଜାତି ହିସାବରେ ସନାକ୍ତ କରିବା ପ୍ରକୃତରେ ଅସମ୍ଭବ (୧୪-କ) ।

ତେଣୁ ସିନ୍ଧୁ ସଭ୍ୟତା ଆର୍ଯ୍ୟସଭ୍ୟତା ବା ବୈଦିକ ସଭ୍ୟତା ବୋଲି ଆମର ଯେଉଁ ଏକ ଧାରଣା ଦୀର୍ଘଦିନ ହେଲି ପ୍ରତିଷ୍ଠିତ ହୋଇଆସିଛି, ତାହା ବର୍ତ୍ତମାନ ସେହିପରି ରହିବା ସମୀଚିନ ହେଉନାହିଁ । କାରଣ ହରପ୍ପା ଓ ମହେଞ୍ଜୋଦାରର ସଭ୍ୟତା ନିଶ୍ଚିତଭାବେ କୃଷି ଭିତ୍ତିକ ସମାଜର ଏକ ଉନ୍ନତ ଅବସ୍ଥାରେ ସୃଷ୍ଟି । ତା' ନହେଲେ ନଗର ଗଢ଼ି ଉଠିବା ଅସମ୍ଭବ । ପଶୁ-ପାଳନ-ପ୍ରଧାନ ଅର୍ଥନୀତିର ଭିତ୍ତିରେ ଏପରି ଉନ୍ନତ ନଗର-ସଭ୍ୟତା ଗଢ଼ିଉଠିବା ସମ୍ଭବପର ନୁହେଁ । (୧୪-ଖ) ।

ଶ୍ରୀ ରାଖାଲ ଦାସ ବନ୍ଦୋପାଧ୍ୟାୟ (୧୫) ମନ୍ତବ୍ୟ କରିଥିଲେ, ଏ ସଭ୍ୟତା ଦ୍ରାବିଡ଼ମାନଙ୍କର କୀର୍ତ୍ତି ଥିଲି । ଏହି ମତକୁ ମଧ୍ୟ ବହୁ ବିଦ୍ୱାନ (୧୬) ସମର୍ଥନ କରନ୍ତନ୍ତି ।

ସିନ୍ଧୁ-ଅଧିବାସୀମାନେ ଏପରି ନଗର ସଭ୍ୟତାରେ ଉପନୀତ ହେବାର କାରଣ ସ୍ୱରୂପ କୁହାଯାଏ ଯେ, ସେମାନଙ୍କ ସମାଜ ଥିଲି କୃଷି ନିର୍ଭର ଏବଂ ଆର୍ଯ୍ୟମାନଙ୍କ ଜୀବନ ଥିଲି ପଶୁପାଳନ-ନିର୍ଭର । ତେଣୁ ପଶୁପାଳନ ସଭ୍ୟତା ଉପରେ ନିର୍ଭର କରି ନଗର-ସଭ୍ୟତା ଗଢ଼ି ଉଠିବା ସମ୍ଭବ ନୁହେଁ (୧୭) ।



# ଆର୍ଯ୍ୟ-ସମାଜ

ଭାରତୀୟ ଗ୍ରନ୍ଥରାଜି ମଧ୍ୟରେ ବୈଦିକ-ସାହିତ୍ୟ ହିଁ ସର୍ବପ୍ରାଚୀନ । ବୈଦିକ ସାହିତ୍ୟ ହେଉଛି—ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ । ଏହା ମଧ୍ୟରେ ସଂହିତା ହେଉଛି ସର୍ବପ୍ରାଚୀନ ଏବଂ ଚାରୋଟି ସଂହିତା ମଧ୍ୟରୁ ପ୍ରାଚୀନତମ ହେଉଛି ଋଗ୍‌ବେଦ । ଋଗ୍‌ବେଦ ହେଉଛି ବିରାଟ । ସେଥିରେ ୧୦୨୮ଟି କବିତା ବା ସୂକ୍ତ ଅଛି । ସୂକ୍ତ ଅନ୍ତର୍ଗତ ପ୍ରତ୍ୟେକଟି ସ୍ତବକୁ 'ଋକ୍' କୁହାଯାଏ । ଋଗ୍‌ବେଦର ମୋଟ ଋକ୍ ସଂଖ୍ୟା ୧୦,୪୬୨ । ସ୍ୱଭାବତଃ ଏହି ସୁବିଶାଳ ସାହିତ୍ୟ ବର୍ଷେ ଦି ବର୍ଷ ମଧ୍ୟରେ ରଚିତ ହୋଇ ନାହିଁ । ଋଗ୍‌ବେଦର ପ୍ରାଚୀନ ଓ ଅର୍ବାଚୀନ ଅଂଶ ମଧ୍ୟରେ ରଚନାକାଳର ବ୍ୟବଧାନ ଅନେକ ଶତାବ୍ଦୀ ବୋଲି ସ୍ୱୀକୃତ ହୋଇଛି (୧୮) । ସମଗ୍ର ଋଗ୍‌ବେଦ ଦଶଟି ଭାଗ ବା "ମଣ୍ଡଳରେ" ବିଭକ୍ତ; ଦ୍ୱିତୀୟରୁ ସପ୍ତମ ମଣ୍ଡଳ ପ୍ରାଚୀନ. ପ୍ରଥମ ଓ ଅଷ୍ଟମ ମଣ୍ଡଳ ଅପେକ୍ଷାକୃତ, ପରବର୍ତ୍ତୀ ଦଶମ ମଣ୍ଡଳ ସବୁଠାରୁ ଅର୍ବାଚୀନ ବୋଲି ବିବେଚିତ ।

"ଏଇ କଥାଗୁଡ଼ିକ ମନେରଖି ବୈଦିକ ସାହିତ୍ୟରେ କୃଷି କାମର ନଜର ବିଚାର କରିବାକୁ ହେବ । ଉତ୍ତର କାଳରେ ବୈଦିକ ମନୁଷ୍ୟମାନେ ଯେ, କୃଷି କାର୍ଯ୍ୟରେ ଯଥେଷ୍ଟ ଉନ୍ନତି କରିଥିଲେ ଏ ବିଷୟରେ ଅବଶ୍ୟ ମତଦ୍ୱୈଧ ନାହିଁ । ତେଣୁ ଯେଉଁମାନେ ଦାବୀ କରନ୍ତି ଯେ, ବେଦରେ ମଧ୍ୟ କୃଷିକାର୍ଯ୍ୟର ପରିଚୟ ଅଛି ସେମାନେ ବି ବୈଦିକ ସାହିତ୍ୟର ପରବର୍ତ୍ତୀ ଅଂଶଗୁଡ଼ିକର ନଜର ଦେଖାନ୍ତି ନାହିଁ । ପ୍ରକୃତ ପ୍ରଶ୍ନ ହେଲା, ଋଗ୍‌ବେଦରେ କୃଷି କାର୍ଯ୍ୟର ପରିଚୟ

କେତେ ଏବଂ ଏ ପରିଚୟ ଋଗ୍‌ବେଦର ପ୍ରାଚୀନତର ନା ଅର୍ବାଚୀନତର ଅଂଶ ମଧ୍ୟରେ ସୀମାବଦ୍ଧ ?"

"ଡଃ ସ୍ୱରୂପ (୧୯) ଦାବୀ କରିଛନ୍ତି, ବୈଦିକ ସମାଜ ମଧ୍ୟ କୃଷିଭିତ୍ତିକ ଥିଲା। ପ୍ରମାଣ ସ୍ୱରୂପ ସେ କିନ୍ତୁ ଋଗ୍‌ବେଦର ମାତ୍ର ୨୫ଟି ଋକ୍ ଉଲ୍ଲେଖ କରିଛନ୍ତି। କହିବା ବାହୁଲ୍ୟ, ଏଗୁଡ଼ିକ ସବୁ ଯଦି ବୈଦିକ ମନୁଷ୍ୟମାନଙ୍କ ମଧ୍ୟରେ କୃଷି କାର୍ଯ୍ୟର ଅବଧାରିତ ପରିଚୟସୂଚକ ହୁଏ, ତାହାହେଲେ ମଧ୍ୟ ବୈଦିକ ଅର୍ଥନୀତିରେ କୃଷି କାର୍ଯ୍ୟର ଗୌଣତ୍ୱ ହିଁ ପ୍ରମାଣିତ ହେବ—କାହିଁକି ନା ଋଗ୍‌ବେଦରେ ମୋଟ ଋକ୍‌ର ସଂଖ୍ୟା ଦଶ ସହସ୍ରାଧିକ। ତୁଳନାରେ କେବଳ 'ଗୋ' ଏବଂ ତଜ୍ଜାତ ଶବ୍ଦ ଋଗ୍‌ବେଦରେ ସହସ୍ରାଧିକବାର ଉଲ୍ଲିଖିତ ଏବଂ ପ୍ରାଚୀନ ମତ ଅନୁସାରେ (ନିଘଣ୍ଟୁ ୨।୧୧) ବୈଦିକ କବିମାନେ ଗୋରୁ ଅର୍ଥରେ ଆହୁରି ୯ଟି ଶବ୍ଦ ବ୍ୟବହାର କରିଛନ୍ତି। କିମ୍ବା ଅଶ୍ୱବାଚକ ଶବ୍ଦ (ନିଘଣ୍ଟୁ ୧।୧୮) କୋଡ଼ିଏ ଋଗ୍‌ବେଦରେ ମୋଟ ୨୫ଟି ଏବଂ ଏଗୁଡ଼ିକର ପ୍ରତ୍ୟେକଟି ଯେ, ମୋଟ କେତେଥର କରି ଋଗ୍‌ବେଦରେ ଉଲ୍ଲିଖିତ ହୋଇଛି ତାହା ଶବ୍ଦସୂଚୀରୁ ଗଣନା କରିବା ମଧ୍ୟ ଶ୍ରମସାଧ୍ୟ। ବସ୍ତୁତଃ ସମଗ୍ର ଋଗ୍‌ବେଦ ହିଁ ଯେ ପଶୁର କାମନାରେ ଭରପୂର—ଏକଥା କହିଲେ ମଧ୍ୟ ଖୁବ୍ ବଢ଼ାଇ କୁହାଯାଉ ନାହିଁ। ଗୋରୁ ସମ୍ବନ୍ଧରେ କୌଣସି କୌଣସି କବିଙ୍କର ଉତ୍ସାହ ଏପରି ଅସମ୍ଭବ ଯେ, ସେମାନେ ବୈଦିକ ଦେବତାମାନଙ୍କୁ ମଧ୍ୟ "ଗୋ-ଜାତଃ" (ଋଗ୍‌ବେଦ ୬।୫୦।୧୧) ବୋଲି କଳ୍ପନା କରିବାରେ ଦ୍ୱିଧା କରି ନାହାନ୍ତି। ସ୍ପଷ୍ଟତଃ ହିଁ ବୁଝାଯାଏ ଯେ, ଏ ସାହିତ୍ୟ ପଶୁପାଳକମାନଙ୍କର ରଚନା। ତା'ଛଡ଼ା, ଯେଉଁ ୨୫ଟି ଋକ୍‌ରେ କୃଷିର ଉଲ୍ଲେଖ ଅଛି ବୋଲି

ଦାବୀ କରାଯାଇଛି ସେଗୁଡ଼ିକର ରଚନାକାଳ ବିଚାରଯୋଗ୍ୟ । ଏହା ମଧ୍ୟରେ ଆଠଟି ଋକ୍ ଦଶମ ମଣ୍ଡଳର ଅନ୍ତର୍ଭୁକ୍ତ । ଅତଏବ ଅତ୍ୟନ୍ତ ଅର୍ବାଚୀନ । ତିନୋଟି ପ୍ରଥମ ମଣ୍ଡଳର ଏବଂ ତିନୋଟି ଅଷ୍ଟମ ମଣ୍ଡଳରେ ଅନ୍ତର୍ଭୁକ୍ତ, ଅତଏବ ଖୁବ୍ ବେଶୀ ପ୍ରାଚୀନ ନୁହେଁ । ଆଠଟି ଋକ୍ ସମନ୍ୱିତ ଗୋଟିଏ ସମଗ୍ର ସୂକ୍ତକୁ କୃଷିର ସ୍ତୁତିରେ ପୂର୍ଣ୍ଣ କୁହାଯାଇଛି, କିନ୍ତୁ ହପ୍‌କିନସ୍ (୨୦) ପ୍ରମାଣ କରିଛନ୍ତି, ଚତୁର୍ଥ ମଣ୍ଡଳରେ ସଂକଳିତ ହେଲେ ହେଁ ମଧ୍ୟ ଏହି ନିର୍ଦ୍ଦିଷ୍ଟ ସୂକ୍ତଟିକୁ ଭାଷାତାତ୍ତ୍ୱିକ ବିଚାରରେ ଋଗ୍‌ବେଦର ଅର୍ବାଚୀନତମ ଅଂଶର ହିଁ ସମସାମୟିକ ବୋଲିବାକୁ ହେବ ।"......ମାକଡ଼ୋନାଲ୍ ଓ କୀଥ୍ (୨୧) କହିଛନ୍ତି "ଲକ୍ଷ୍ୟ କରିବା ବିଷୟ, ଜମିରେ ଲଙ୍ଗଳ ଦେବାର ଉଲ୍ଲେଖ ଋଗ୍‌ବେଦର କେବଳ ମାତ୍ର ପ୍ରଥମ ଓ ଦଶମ ମଣ୍ଡଳରେ ହିଁ ମିଳେ ଏବଂ ଏ ଘଟଣା ଅବଶ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ପରବର୍ତ୍ତୀ ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥରେ ହଳ କର୍ଷଣର ପ୍ରଭୂତ ଉଲ୍ଲେଖ ଅଛି ।"

ତେଣୁ ସିନ୍ଧୁ-ସଭ୍ୟତା ମୂଳତଃ କୃଷି-ନିର୍ଭର, ବୈଦିକ ସଂସ୍କୃତି ମୂଳତଃ ପଶୁପାଳନ-ନିର୍ଭର । ଏ କ୍ଷେତ୍ରରେ ଯୁକ୍ତି ହୋଇପାରେ ଯେ, କୃଷିକାର୍ଯ୍ୟ ଶିଖି ବୈଦିକ ଲୋକେ ସିନ୍ଧୁ-ସଭ୍ୟତାର ଭିତ୍ତି ସ୍ଥାପନ କରିଥିଲେ । ଡଃ ସ୍ୱରୂପ (Sarup in "Indian Culture" No 4, page 169) ଏହି ପ୍ରକାର କଥା କହିଛନ୍ତି । କିନ୍ତୁ କାଳ ନିର୍ଣ୍ଣୟରେ କିମ୍ବା ହରପ୍ପା-ମହେଞ୍ଜୋଦାରରୁ ଆବିଷ୍କୃତ ବସ୍ତୁ ସମୂହ ଦ୍ୱାରା ତାହା ପ୍ରମାଣିତ ହେଉନାହିଁ । ଏ ବିଷୟରେ ଜନ୍ ମାର୍ଶାଲ ସବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି ।

କିନ୍ତୁ ସିନ୍ଧୁ-ସଭ୍ୟତା ପ୍ରସଙ୍ଗରେ ହୁଇଲ୍‌ର୍ କହିଛନ୍ତି (୨୨) ଏହାର ଆଦି ପର୍ବଠାରୁ ଅନ୍ତିମ ପର୍ବର କଥା ଆମମାନଙ୍କ ପାଖରେ

ସ୍ପଷ୍ଟତର । କାହିଁକ ନା ପ୍ରତ୍ନତତ୍ତ୍ୱରେ ପ୍ରମାଣିତ ହୋଇଛି, କୌଣସି ଏକ ଲିପିହୀନ ପ୍ରାକ୍-ସଭ୍ୟ ମାନବ ଦଳର ଆକ୍ରମଣରେ ହିଁ ଏ ସଭ୍ୟତା ଧ୍ୱଂସ ହୋଇଥିଲା । କିନ୍ତୁ ଏହି ଆକ୍ରମଣକାରୀ କିଏ ?

୧୯୨୬ ସାଲରେ ରାମପ୍ରସାଦ ଚନ୍ଦ (୨୩) ମନ୍ତବ୍ୟ କରିଥିଲେ ଯେ, ଋଗ୍‌ବେଦରୁ ଏ ପ୍ରଶ୍ନର ଉତ୍ତର ମିଳେ । ବୁଝାଯାଏ, ଯେଉଁମାନେ ବେଦ ରଚନା କରିଥିଲେ ସେଇମାନେ ହିଁ ଧ୍ୱଂସ କରିଥିଲେ ସିନ୍ଧୁ-ସଭ୍ୟତା । ମନେ ରଖିବା ଦରକାର ଯେ ଶ୍ରୀ ଚନ୍ଦ ଯେତେବେଳେ ଏ ମନ୍ତବ୍ୟ କରିଥିଲେ, ସେତେବେଳେ ଏପରିକି ମାର୍ଶାଲ୍‌ଙ୍କର ରିପୋର୍ଟ ମଧ୍ୟ ପ୍ରକାଶିତ ହୋଇ ନ ଥିଲା । ଅଥଚ ଆଜି ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏ ବିଷୟରେ ଚନ୍ଦଙ୍କର ମୂଳ ମନ୍ତବ୍ୟକୁ ସୁପ୍ରତିଷ୍ଠିତ ସିଦ୍ଧାନ୍ତ ହିସାବରେ ଗ୍ରହଣ କରିଛନ୍ତି ।

ଚନ୍ଦ, ଏ ବିଷୟରେ ଉଲ୍ଲେଖ କରିଛନ୍ତି, "ଋଗ୍‌ବେଦର ଅନେକ ସ୍ଥାନରେ ପୁରଃ ବା ପୁରର ଉଲ୍ଲେଖ ଦେଖାଯାଏ ।···ଗୋଟିଏ ଋକ୍‌ରେ ଅୟସ୍-ନିର୍ମିତ କୌଣସି ଶତଭୁଜ ବା ବିରାଟ ପୁରର ଉଲ୍ଲେଖ ଅଛି । ଅୟସ୍ ମାନେ ଲୁହା ବା ତମ୍ବା ।···ସ୍ପଷ୍ଟ ବୁଝାଯାଏ ମଜବୁତ ବା କଠିନ ଅର୍ଥରେ ହିଁ ଏସବୁ କ୍ଷେତ୍ରରେ ଅୟସ୍ ଶବ୍ଦ ବ୍ୟବହୃତ ହୋଇଛି ।···ଋଗ୍‌ବେଦରେ କିନ୍ତୁ ଆର୍ଯ୍ୟ ଋଷି ଓ ଉପାସକମାନଙ୍କ ବଦଳରେ ଆର୍ଯ୍ୟ-ଶତ୍ରୁମାନଙ୍କ ସାଙ୍ଗରେ 'ପୁର'ର ସମ୍ପର୍କ ବାରମ୍ବାର ଆଖିରେ ପଡ଼େ । ଋଗ୍‌ବେଦର ଦୁଇଜଣ ବିଖ୍ୟାତ ରାଜା—ଭରତମାନଙ୍କ ରାଜା ଦିବୋଦାସ ଏବଂ ପୁରୁମାନଙ୍କ ରାଜା ପୁରୁକୁତ୍ସ—ପୁର-ଅଧିବାସୀ ଶତ୍ରୁମାନଙ୍କ ସହିତ ଯୁଦ୍ଧରେ ନିହତ । ଦିବୋଦାସ ଥିଲେ···ସୁବିଖ୍ୟାତ ସୁଦାସର ପିତାମହ । ପୁରସ୍ତ୍ରୀ ବା

ରାବୀ ନଦୀର ପଶ୍ଚିମ ଧାରରେ ସୁଦାସ ଦଶଟି ଜାତିକୁ ଯୁଦ୍ଧରେ ପରାସ୍ତ କରିଥିଲେ । ଉକ୍ତ ଦିବୋଦାସଙ୍କର ହୋଇ, ଇନ୍ଦ୍ର "ଅଶ୍ମନ୍‌ମୟୀ" ଶତ ପୁର ଧ୍ୱଂସ କରିଥିଲେ ।...ଆଧୁନିକ ବିଦ୍ୱାନ-ମାନେ ପୁର ବୋଇଲେ ସାମୟିକ ଆଶ୍ରୟସ୍ଥଳ ବୁଝିଛନ୍ତି ।...କିନ୍ତୁ 'ପୁର' ଶବ୍ଦର ଅର୍ଥ ହେଲା—ନଗର ବା ସହର, କିଲ୍ଲା ନୁହେଁ । କିଲ୍ଲାର ସଂସ୍କୃତ ପ୍ରତିଶବ୍ଦ ହେଲା ଦୁର୍ଗ ଏବଂ ଋଗ୍‌ବେଦରେ ହିଁ ତାର ଉଲ୍ଲେଖ ମିଳେ ।...ଗୋଟିଏ ଋକ୍‌ରେ ପୁର ଏବଂ ଦୁର୍ଗ ଶବ୍ଦ ପାଖାପାଖି ଉଲ୍ଲିଖିତ ରହିଛି ।...ଋଗବେଦ ଯୁଗରେ କେଉଁଠି କେଉଁ ନଗରର ଚିହ୍ନ ନ ଥିଲା—ଏ ଜାତୀୟ ସଂସ୍କାରରୁ ମୁକ୍ତ ହେଲେ ଉକ୍ତ ଋକ୍‌ରେ ସହର ଏବଂ କିଲ୍ଲା ଉଭୟର ହିଁ ପରିଚୟ ଆମମାନଙ୍କ ଆଖିରେ ପଡ଼ିବ । ହରପ୍ପା ଏବଂ ମହେଞ୍ଜୋଦାରରେ ନଗରର ଧ୍ୱଂସାବଶେଷ ଆବିଷ୍କୃତ ହେବାପରେ ଆଜି ଆଉ ଏ ବିଷୟରେ କୌଣସି ସନ୍ଦେହ ରହିପାରେ ନାହିଁ ଯେ, ଋଗ୍‌ବେଦର ଆର୍ଯ୍ୟମାନେ ବିପକ୍ଷଙ୍କ ନଗର ଓ ସହର ସହିତ ପରିଚିତ ଥିଲେ ।. ଏକ ସମୟରେ ଇନ୍ଦ୍ର-ଉପାସକ ଆର୍ଯ୍ୟମାନେ ପ୍ରକୃତରେ ହିଁ ଏ ଦେଶର ସୁସଭ୍ୟ ଅଧିବାସୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ ଏବଂ ସୁରକ୍ଷିତ ସ୍ଥାନର ଆଶ୍ରୟରେ ଯୁଦ୍ଧ କରୁଥିଲେ ଏଇ ଘଟଣାଟି ସତ୍ୟ ଏବଂ ଜନସ୍ମୃତିରେ ଏହାର ସ୍ମୃତି ବହୁଦିନ ରହି ଆସିଛି । ତା'ହେଲେ, ଆର୍ଯ୍ୟମାନଙ୍କର ଶତ୍ରୁ ବୋଇଲେ କେଉଁମାନେ ? ଋଗବେଦରେ କ'ଣ ସେମାନଙ୍କ ସମ୍ବନ୍ଧରେ ଆଉ କୌଣସି ସମ୍ବାଦ ମିଳେ ? ମୋର ମନେ ହୁଏ, ସିନ୍ଧୁ-ଉପତ୍ୟକାରେ ଆର୍ଯ୍ୟମାନେ ଏଇ ଯେଉଁ ସ୍ଥାନୀୟ ନଗରବାସୀଙ୍କ ସହିତ ସଂଗ୍ରାମ କରିଥିଲେ, ଋଗ୍‌ବେଦର ସହସ୍ର ମନ୍ତ୍ରଳରେହିଁ ସେମାନଙ୍କର ନାମ ଦିଆଯାଇଛି—'ପଣି' ଶବ୍ଦଟି ସ୍ପଷ୍ଟ ପଣ ବା ମୂଲ୍ୟରୁ ଆସିଛି ।...ଋଗ୍‌ବେଦ-ଉଲ୍ଲିଖିତ ପଣି

ବୋଇଲେ ମନୁଷ୍ୟମାନେ ଧନ ଦୌଲତରେ...ଏବଂ ଋଗ୍‌ବେଦର ନାନା ସ୍ଥାନରେ ଏହି ପଣିମାନଙ୍କ ବିରୁଦ୍ଧରେ ବିଦ୍ୱେଷୋଦ୍‌ଗାର କରାଯାଇଛି । ଋଗ୍‌ବେଦର ସୂକ୍ତଗୁଡ଼ିକରୁ ସ୍ପଷ୍ଟ ବୁଝାଯାଏ, ବୈଦିକ ଆର୍ଯ୍ୟମାନେ ପ୍ରଧାନତଃ ଦୁଇଟି ଶ୍ରେଣୀରେ ବିଭକ୍ତ ଥିଲେ—ପୁରୋହିତ ଓ ଯୋଦ୍ଧା । ପଶୁପାଳନହିଁ ସେମାନଙ୍କର ପ୍ରଧାନ ଜୀବିକା, ପ୍ରଧାନ ଧନ ସମ୍ପଦ ବୋଇଲେ ଗୋରୁ । କୃଷି କାର୍ଯ୍ୟର ପ୍ରଚଳନ ଥିଲା ସୀମାବଦ୍ଧ ।...ସିନ୍ଧୁ-ଉପତ୍ୟକାରେ ସୁପ୍ରାଚୀନ କାଳରୁ ବ୍ୟବସାୟ ବାଣିଜ୍ୟମୂଳକ ଜୀବନ ଗଢ଼ି ଉଠିଥିଲା । ସେହି ପଣିମାନେ ଖୁବ୍ ସମ୍ଭବ ଥିଲେ ସିନ୍ଧୁ-ଉପତ୍ୟକାର ପ୍ରାଗୈତିହାସିକ ସଭ୍ୟତାର ଶେଷ ପର୍ଯ୍ୟାୟର ପ୍ରତିନିଧି । ସେଇ ପର୍ଯ୍ୟାୟରେ ହିଁ ସେମାନେ ଆକ୍ରମଣକାରୀ ଆର୍ଯ୍ୟମାନଙ୍କର ସଂସ୍ପର୍ଶରେ ଆସିଥିଲେ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ସହସ୍ରାବ୍ଦରେ ସିନ୍ଧୁ-ଉପତ୍ୟକାରେ ଯେଉଁ ଘଟଣା ଘଟିଥିଲା ତା ସହିତ ସମସାମୟିକ ଇରାନର ଘଟଣାର ତୁଳନା କରାଯାଏ—ଉତ୍ତର-ପଶ୍ଚିମ ଦେଶରୁ ଗୋଟିକ ପରେ ଗୋଟିଏ ଆର୍ଯ୍ୟ-ଭାଷାଭାଷୀଙ୍କ ଦଳ ଆସି ପହଞ୍ଚିଲା । ଏହି ଆକ୍ରମଣକାରୀମାନଙ୍କ ମଧ୍ୟରେ ଋଗ୍‌ବେଦରେ ଯେଉଁମାନେ ନିଜକୁ ଆର୍ଯ୍ୟ ଆଖ୍ୟା ଦେଇଛନ୍ତି ସେମାନେ ଉପତ୍ୟକାର ଦକ୍ଷିଣାଂଶରେ ନଗର ଓ ସୌଧବାସୀ ଏକ ସୁସଭ୍ୟ ମାନବଦଳଙ୍କ ସଂସ୍ପର୍ଶରେ ଆସିଥିଲେ । ଏମାନେ ପ୍ରଧାନତଃ ହିଁ ବ୍ୟବସାୟ-ବାଣିଜ୍ୟ ଉପରେ ନିର୍ଭର କରୁଥିଲେ । ବିଜେତା ଆର୍ଯ୍ୟମାନେ ଐହିକ ସଂସ୍କୃତି ଦିଗରୁ ତୁଳନାରେ ଅନୁନ୍ନତ ଥିଲେ, "ସେମାନେ ହୁଏତ ଏଇ ନଗରଗୁଡ଼ିକ ଧ୍ୱଂସ କରିଥିଲେ ନଚେତ ଏଗୁଡ଼ିକୁ ଧ୍ୱଂସ ସ୍ତୂପରେ ପରିଣତ ହେବାକୁ ଦେଇଥିଲେ । ଋଗ୍‌ବେଦର ପ୍ରଧାନ ଦେବତା ଇନ୍ଦ୍ରଙ୍କୁ କୁହାଯାଇଛି ପୁରହା ବା ପୁରନ୍ଦର—ପୁର-ଧ୍ୱଂସକାରୀ । ଇରାନର ପ୍ରାଗୈତିହାସିକ

ସଭ୍ୟତାପରି ସିନ୍ଧୁ-ଉପତ୍ୟକାର ପ୍ରାଗୈତିହାସିକ ସଭ୍ୟତା ମଧ୍ୟ ଆର୍ଯ୍ୟ-ଆକ୍ରମଣର ଆଘାତ ସହ୍ୟ କରି ପାରି ନାହିଁ ।”

ପରବର୍ତ୍ତୀ କାଳରେ ପ୍ରତ୍ନତତ୍ତ୍ୱମୂଳକ ଆବିଷ୍କାର କପରି ଭାବରେ ଏ ମନ୍ତବ୍ୟ ସମର୍ଥନ କରିଛି ତାର ପରିଚୟ (୨୪) ରୁ ଏହା ସ୍ପଷ୍ଟ ଜଣାଯାଏ ଯେ—

‘ହରପ୍ପା ଓ ମହେଞ୍ଜୋଦାରୋ ଉଭୟ କ୍ଷେତ୍ରରେ ହିଁ ନଗର ଗୁଡ଼ିକ ବାରମ୍ବାର ଏବଂ ଉପର-ଉପର ଗଢ଼ା ଯାଇଥିବାର ପରିଚୟ ମିଳେ—ଯେ ପରି ଥାକ ଥାକ ହୋଇ ସଜା ହୋଇଛି । କିନ୍ତୁ ଦ୍ରଷ୍ଟବ୍ୟ, ତଳ ସ୍ତରଠାରୁ ଉପରସ୍ତର ଆଡ଼କୁ ନଗର ସଭ୍ୟତାର କୌଣସି ଧାରାବାହିକ ଉନ୍ନତିର ଇତିହାସ ନଜରରେ ପଡ଼େ ନାହିଁ । ଉଭୟ କ୍ଷେତ୍ରରେ ଆରମ୍ଭରୁ ହିଁ ସୁଉନ୍ନତ ଓ ସୁପରି କଳ୍ପିତ ନଗର ଏବଂ ନଗର ଶାସକମାନଙ୍କର ବ୍ୟବସ୍ଥା ଏପରି ନିଖୁଣ ଯେ, କୌଣସି ସ୍ତରର କୌଣସି ଘର ହିଁ ରାସ୍ତାଘାଟ ଉପରକୁ ଏତେ ଟିକିଏ ମଧ୍ୟ ଆଗେଇ ଆସି ନାହିଁ । କିନ୍ତୁ ସର୍ବୋଚ୍ଚ ଅତଏବ ସର୍ବଶେଷ ସ୍ତରଟିରେ ତା ନୁହେଁ । ହରପ୍ପାର ଶେଷ ସ୍ତରରେ ନଗର ନିର୍ମାଣ ପରିକଳ୍ପନାରେ ଅବକ୍ଷୟର ସମସ୍ତ ଲକ୍ଷଣ ଫୁଟି ଉଠିଛି, ପୁରୁଣା ସ୍ତରର ଇଟା ବ୍ୟବହାର କରି ନୂତନ ଘର ତିଆରି ହୋଇଛି, କିନ୍ତୁ ତାହା ଅତ୍ୟନ୍ତ ବାଜେ ଧରଣର; ଅଥଚ ତାର ତଳେ—ପୁରୁଣା ସ୍ତରରେ—ସଉଦାଗରମାନଙ୍କର ସୁପରିସର ଚମତ୍କାର ଘର ।··· ପିଗ୍‌ଟ ଦେଖାଇଛନ୍ତି ମହେଞ୍ଜୋଦାରୋର ସର୍ବୋଚ୍ଚ ପର୍ଯ୍ୟାୟଟିରେ ମଧ୍ୟ ଆତଙ୍କପୂର୍ଣ୍ଣ ଅଶାନ୍ତ ଅବସ୍ଥା ଏବଂ ଅବକ୍ଷୟର ଛବି ସୁପରିସ୍ଫୁଟ । ଆତଙ୍କିତ ନରନାରୀ, ଧନ ଦୌଲତ, ଗହଣାଗାଣ୍ଠି ମାଟିରେ ପୋତି ରଖିବାର ଆୟୋଜନ

କରିଛନ୍ତି, ବାଟଘାଟ ଉପରକୁ ଘରବାଡ଼ ଆଗେଇ ଆସିଛି, ଇଟାର ଗାନ୍ଥୁଣୀ ଆଗ ଅପେକ୍ଷା ଅନେକ ନିକୃଷ୍ଟ, ବଡ଼ ବଡ଼ ଘରଗୁଡ଼ିକ ଭାଗ କରିନେଇ ଗୋଟିଏ ଘରେ ଅନେକ ଏକସାଙ୍ଗରେ ରହିବାର ଆୟୋଜନ କରିଛନ୍ତି, ଏପରି କି ସଦର ରାସ୍ତା ଉପରେ ହିଁ ମୃତ୍ପାତ୍ର ପୋଡ଼ିବାର ଚୁଲୀ ତିଆରି ହୋଇଛି ଏବଂ ଏ ନଗର ଆକ୍ରାନ୍ତ ହେବାର ପରିଚୟ ମଧ୍ୟ ଅସ୍ପଷ୍ଟ ନୁହେଁ—ରାସ୍ତାର ସିଡ଼ିରେ ମୁହଁମାଡ଼ି ପଡ଼ିଥିବା ମନୁଷ୍ୟର କଙ୍କାଳ ତାର ସାକ୍ଷ୍ୟ । ଏପରି ଦୁର୍ଦ୍ଦିନରେ ସେମାନେ ଖୁନ ହୋଇଥିଲେ ଯେତେବେଳେ ଅନ୍ୟ ମନୁଷ୍ୟମାନେ ପ୍ରାଣ ନେଇ ପଳାଇବାରେ ବ୍ୟସ୍ତ—ମୃତର ସଂସ୍କାର କରିବ କିଏ ?

ଯେଉଁ ସମାଧି ମନ୍ଦିର ଆବିଷ୍କୃତ ହୋଇଛି, ତାହା ଆଗନ୍ତୁକ-ମାନଙ୍କ ସ୍ୱାକ୍ଷର (୨୫) ।

ଚ୍ନହୁ-ଦାରୋ ଧ୍ୱଂସସ୍ତୂପ (୨୬) ରୁ ମୋଟ ଉପରେ ଏକ ପ୍ରକାର ଇଙ୍ଗିତ ମିଳିଛି । ପ୍ରଥମ ଅର୍ଥାତ୍ ସର୍ବନିମ୍ନ ଅତଏବ ସର୍ବ-ପ୍ରାଚୀନ ସ୍ତରରେ ଅତ୍ୟନ୍ତ ଅବଧାରିତ ହରପ୍ପା-ସଂସ୍କୃତିର ପରିଚୟ । କିନ୍ତୁ ଦ୍ୱିତୀୟ ଏବଂ ତୃତୀୟ ସ୍ତର ଦୁଇଟିରେ ସ୍ୱତନ୍ତ୍ର ଆଗନ୍ତୁକ ସଂସ୍କୃତିର ସାକ୍ଷ୍ୟ; ପ୍ରଥମ ଓ ଦ୍ୱିତୀୟ ସ୍ତର ମଧ୍ୟରେ ସମୟର ବ୍ୟବଧାନ ସ୍ପଷ୍ଟ (୨୭) । ଏଥି ମଧ୍ୟରୁ ୨ୟ ସ୍ତରଟିର ନାମ ଦିଆଯାଇଛି 'ଝୁକର-ସଂସ୍କୃତି ।' ଅର୍ଥାତ୍ ଚ୍ନହୁ-ଦାରୋରେ ହରପ୍ପା-ସଂସ୍କୃତିର ଧ୍ୱଂସସ୍ତୂପ ଉପରେ ଝୁକର-ସଂସ୍କୃତିର ମନୁଷ୍ୟମାନେ ଆସନ ସ୍ଥାପନ କରିଥିଲେ । ସିନ୍ଧୁ ସାମ୍ରାଜ୍ୟର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଝୁକର-ସଂସ୍କୃତିର ସ୍ମାରକ ମିଳିଛି ଏବଂ ସର୍ବତ୍ର ହିଁ ତାହା ବର୍ବର ଅବସ୍ଥାର ପରିଚାୟକ (୨୮) । ପୁଣି-ଦ୍ରଷ୍ଟବ୍ୟ ହେଲା, ଏଇ ଝୁକର-ସଂସ୍କୃତିର ସୀଲ୍ ସହିତ ଛବି ପ୍ରଭୃତିର

ହରପ୍ପାରୁ ପ୍ରାଚୀନ ଇଟାଇଟ୍‌ମାନଙ୍କର ସୀଲର ସାଦୃଶ୍ୟ ଦେଖିବାକୁ ମିଳେ (୨୯) ଏବଂ ଏହି ଇଟାଇଟମାନଙ୍କର ଏକ ସୀଲରେ ଇନ୍ଦ୍ର, ବରୁଣ, ମିତ୍ର ପ୍ରଭୃତି ବୈଦିକ ଦେବତାମାନଙ୍କର ନାମ ଆବିଷ୍କୃତ ହୋଇଛି (୩୦) । ଅତଏବ ଖ୍ରୀଷ୍ଟ-ପୂର୍ବରେ ହରପ୍ପା ସଂସ୍କୃତିର ଧ୍ୱଂସ-ସ୍ତୂପ ଉପରେ ଝୁକର-ସଂସ୍କୃତିର ଯେଉଁ ବାହକଗଣ ଆବାସ ସ୍ଥାପନ କରିଥିଲେ ସେମାନଙ୍କ ସହିତ ବୈଦିକ ଆର୍ଯ୍ୟମାନଙ୍କର ସଂପର୍କ ବା ଯୋଗାଯୋଗ ଥିବା ଅସମ୍ଭବ ନୁହେଁ ।

ଋଗ୍‌ବେଦର ସାକ୍ଷ୍ୟରୁ ବୁଝାଯାଏ, ବୈଦିକ ମନୁଷ୍ୟମାନେ କେବଳମାତ୍ର ସିନ୍ଧୁ ସଭ୍ୟତାର ପୁରଗୁଡ଼ିକ ଧ୍ୱଂସ କରିଥିଲେ । ତା’ ଛଡ଼ା କୃଷିକାର୍ଯ୍ୟ ପକ୍ଷରେ ଅପରିହାର୍ଯ୍ୟ ବନ୍ଧଗୁଡ଼ିକ ମଧ୍ୟ ଭାଙ୍ଗି ଦେଇଥିଲେ । ଫଳରେ ଧ୍ୱଂସ ହୋଇଥିଲା ସିନ୍ଧୁ-ସଭ୍ୟତାର ଅର୍ଥନୈତିକ ଭିତ୍ତି । ଏ ବିଷୟରେ ଶ୍ରୀ କୋଶାମ୍ବୀ (୩୧) ନିମ୍ନୋକ୍ତ ପ୍ରମାଣ ଉଦ୍ଧୃତ କରିଛନ୍ତି ।

"ଇନ୍ଦ୍ରଙ୍କ କୀର୍ତ୍ତି-ବର୍ଣ୍ଣନାରେ ଋଗ୍‌ବେଦରେ ବାରମ୍ବାର କୁହାଯାଇଛି, ସେ ଜଳସ୍ରୋତକୁ ମୁକ୍ତ ଦେଇଥିଲେ । ମାକ୍‌ସମୁଲରଙ୍କ ଯୁଗରେ ଏ ବର୍ଣ୍ଣନାକୁ ପ୍ରାକୃତିକ ଘଟଣାମୂଳକ ପୌରାଣିକ କାହାଣୀ ବୋଲି ମନେ କରାଯାଇଛି—ବୃଷ୍ଟିର ଦେବତା ଯେପରି ମେଘର ଅବରୋଧ ଭାଙ୍ଗି ବୃଷ୍ଟିର ଜଳ ମୁକ୍ତ କରିଛନ୍ତି । କିନ୍ତୁ ଋଗ୍‌ବେଦର ପ୍ରକୃତ ବର୍ଣ୍ଣନା ଏ ବ୍ୟାଖ୍ୟାକୁ ମୋଟେ ସମର୍ଥନ କରେ ନାହିଁ । କାହିଁକି ନା ସେ ବର୍ଣ୍ଣନା ଅନୁସାରେ, ଏଇ ଭାବରେ ଜଳସ୍ରୋତକୁ ମୁକ୍ତ କରିବା ଲାଗି ଇନ୍ଦ୍ର ବୃତ୍ରକୁ ବଧ କରିଥିଲେ । ବୃତ୍ର ବୋଇଲେ ସାଧାରଣତଃ କୌଣସି ଦାନବ-ନାମ ବୁଝାଯାଏ । କିନ୍ତୁ ସଂପ୍ରତି ଅତ୍ୟନ୍ତ ଦକ୍ଷ ଦୁଇ ଜଣ ଭାଷାତତ୍ତ୍ୱବିତ୍ ଏଇ ଶବ୍ଦ ଦୁଇଟି ବିଶ୍ଳେଷଣ

କରିଛନ୍ତି । ନାନ୍ଦକ୍ ଭାଷାତତ୍ତ୍ୱମୂଳକ ସାକ୍ଷ୍ୟ ଉପରେ ନିର୍ଭର କରି ସେମାନେ ପ୍ରମାଣ କରିଛନ୍ତି ବୃତ୍ର ଅର୍ଥରେ କୌଣସି ଦାନବ ବୁଝିବା କଠିନ ନୁହେଁ—ଶବ୍ଦଟିର ପ୍ରକୃତ ଅର୍ଥ ହେଲା 'ବାଧା' 'ବନ୍ଧ' । ଋଗବେଦର ବୃତ୍ର-ବିନାଶ ବର୍ଣ୍ଣନା ମଧ୍ୟ ଏଇ ଅର୍ଥ ହିଁ ସମର୍ଥନ କରେ; ତାଲୁ ଜମିରେ ବୃତ୍ର ସାପ ପରି ଶୋଇ ରହିଛି, ତେଣୁ ନଦୀ ସ୍ରୋତ ବାଧା ପାଇ ଅଟକି ଯାଇଛି । ଇନ୍ଦ୍ର ଯେତେବେଳେ ବଜ୍ର ସାହାଯ୍ୟରେ ତାକୁ ଆଘାତ କଲେ ଜମି ଦୁମୁକି ଉଠିଲା, ପଥର-ଗୁଡ଼ାକ ରଥର ଚକା ପରି ଗଡ଼ଗଡ଼ ପଡ଼ିବାକୁ ଲାଗିଲା ଓ ବୃତ୍ରର ଶୋଇ ରହିଥିବା ଦେହ ଉପରେ ଦେଇ ବହିଗଲା ବାଧାମୁକ୍ତ ଜଳସ୍ରୋତ । ବନ୍ଧ ଧ୍ୱଂସ କରିବାର ବର୍ଣ୍ଣନା, ସନ୍ଦେହ ନାହିଁ ଏବଂ ଆଲୋଚ୍ୟ ଇଲାକାର ପଶ୍ଚିମାଞ୍ଚଳରେ ଆଜି ମଧ୍ୟ ପ୍ରାଗୈତିହାସିକ ବନ୍ଧର ସ୍ମାରକ ଖୋଜି ମିଳିଅଛି । ସେଗୁଡ଼ିକର ଆଧୁନିକ ଓ ସ୍ଥାନୀୟ ନାମ ଗେବ୍ରୁ-ବନ୍ଧ । ଇନ୍ଦ୍ରଙ୍କର ଏଇ ବନ୍ଧ ଧ୍ୱଂସମୂଳକ କୀର୍ତ୍ତି ବୃତ୍ର ସଂକ୍ରାନ୍ତ ପୌରାଣିକ କାହାଣୀର କଷ୍ଟକଳ୍ପିତ ବ୍ୟାଖ୍ୟା ନୁହେଁ । ଋଗ୍‌ବେଦରେ (୨।୧୫।୮) କୁହାଯାଇଛି, "ରିଣକ୍ ରୋଧାଂସି କୃତ୍ରିମାନି"—ସେ କୃତ୍ରିମ ବନ୍ଧଗୁଡ଼ିକ ଭାଙ୍ଗି ଦେଇଥିଲେ । ପରବର୍ତ୍ତୀ ସଂସ୍କୃତରେ ଏବଂ ଋଗ୍‌ବେଦର ଅନ୍ୟତ୍ର ମଧ୍ୟ ରୋଧସ୍ ଶବ୍ଦର ଅର୍ଥ ବନ୍ଧ ।"

---

# ସିନ୍ଧୁସଭ୍ୟତାର ମୌଳିକତା

ପୂର୍ବେ କୁହାଯାଇଛି, ସିନ୍ଧୁ ସଭ୍ୟତାର ମୌଳିକ ଅର୍ଥନୈତିକ ଭିତ୍ତି ହେଉଛି କୃଷି ଉତ୍ପାଦନ ଏବଂ ତତ୍କାଳୀନ ସମାଜ ହିଁ କୃଷି-ଭିତ୍ତିକ ସମାଜ । ଏହି ସୂତ୍ରରେ ପ୍ରତିପାଦିତ ହେବାରେ ବାଧା ନାହିଁ ଯେ ସେ ସମାଜ ନିଶ୍ଚିତ ଭାବେ ଥିଲା ମାତୃପ୍ରଧାନ ସମାଜ ।

ପୃଥିବୀର ବିଭିନ୍ନ ଦେଶର ପ୍ରାଚୀନ ଇତିହାସରେ ଦେଖାଯାଏ ପ୍ରାଥମିକ ସମାଜର କୃଷି କାର୍ଯ୍ୟ ସ୍ତ୍ରୀମାନଙ୍କର ହିଁ ଆବିଷ୍କାର (୩୨) । "ଆଦିମ କୃଷି-ଭିତ୍ତିକ ସମାଜ ହିଁ ତେଣୁ ମାତୃ-ପ୍ରଧାନ ଏବଂ ପ୍ରାଚୀନ କାଳରେ ଇଉଫ୍ରେଟିସ୍, ନୀଳ ଓ ସିନ୍ଧୁନଦୀର କନାରେ ମନୁଷ୍ୟ ଯେ ପ୍ରଥମ ସଭ୍ୟତାର ଇମାରତ ଗଢ଼ି ପାରିଥିଲା ତାହାର ମଧ୍ୟ ବୃତ୍ତାନ୍ତ କାରଣ ଏହି କୃଷି ଆବିଷ୍କାର । ଅତଏବ ଏଇ ପ୍ରାଚୀନ ସଭ୍ୟତାଗୁଡ଼ିକର ତଳେ ମାତୃ-ପ୍ରଧାନ ସମାଜର ପରିଚୟ ଲୁଚି ହୋଇ ଯାଇଥିବା ସ୍ୱାଭାବିକ । ତାର ମାନେ ନିଶ୍ଚୟ ହିଁ ଏହା ନୁହେଁ ଯେ ନଗର ସଭ୍ୟତାଗୁଡ଼ିକର ସୁଉନ୍ନତ ପର୍ଯ୍ୟାୟରେ ମଧ୍ୟ ସମାଜ-ବ୍ୟବସ୍ଥା ମାତୃ-ପ୍ରଧାନ ଥିଲା । କାହିଁକି ନା ଆଦିମ କୃଷି-ଭିତ୍ତିକ ମାତୃ-ପ୍ରଧାନ ସମାଜ ବ୍ୟବସ୍ଥାର ପରମାୟୁ ଖୁବ୍ ଦୀର୍ଘ ନୁହେଁ; ପ୍ରତ୍ନତତ୍ତ୍ୱ ଓ ନୃତତ୍ତ୍ୱର ସାକ୍ଷ୍ୟ ଅନୁସାରେ ଅନୁମିତ ହୋଇଛି (୩୩) ଉନ୍ନତତର କୃଷି କାର୍ଯ୍ୟର ପର୍ଯ୍ୟାୟରେ ଗୃହପାଳିତ ପଶୁଙ୍କ ସାହାଯ୍ୟରେ ଲଙ୍ଗଳ ବ୍ୟବସ୍ଥା ପ୍ରଚଳିତ ହୋଇଥାଏ—କୃଷି-କାର୍ଯ୍ୟରେ ପୁରୁଷମାନଙ୍କ ଭୂମିକା ହିଁ ପ୍ରଧାନ ହୋଇଥାଏ ଏବଂ ତାହା ଫଳରେ କ୍ରମଶଃ ସମାଜ-ବ୍ୟବସ୍ଥା ମଧ୍ୟ ପୁରୁଷ-ପ୍ରଧାନ ହୋଇ-

ଉଠିଛି । ତେଣୁ ପ୍ରାଚୀନ ସଭ୍ୟତାଗୁଡ଼ିକର ତଳେ ମାତୃ-ପ୍ରାଧାନ୍ୟର ପରିଚୟ ଢାଙ୍କି ହୋଇ ରହିଥିଲେ ମଧ୍ୟ ଏକଥା ମନେ କରିବାର କାରଣ ନାହିଁ ଯେ ସଭ୍ୟତାଗୁଡ଼ିକର ଯେତେବେଳେ ପୂର୍ଣ୍ଣ ବିକାଶ ସେତେବେଳେ ସମାଜ-ବ୍ୟବସ୍ଥାରେ ମାତୃ-ପ୍ରାଧାନ୍ୟର ପରିଚୟ ଅକ୍ଷୁଣ୍ଣ ଥିଲା । କିନ୍ତୁ ସମାଜ-ବ୍ୟବସ୍ଥାରେ ମାତୃ-ପ୍ରାଧାନ୍ୟ କ୍ଷୁଣ୍ଣ ଓ ପରିବର୍ତ୍ତିତ ହେଲେ ମଧ୍ୟ ବିଶେଷତଃ ଧ୍ୟାନ-ଧାରଣା କ୍ଷେତ୍ରରେ ତାର ସୁସ୍ପଷ୍ଟ ସ୍ମାରକ ଦୀର୍ଘଦିନ ପର୍ଯ୍ୟନ୍ତ ବର୍ତ୍ତମାନ ରହିବା ହିଁ ସ୍ୱାଭାବିକ । ଅତଏବ ହରପ୍ପା-ସଂସ୍କୃତିର ବାସ୍ତବ ସମାଜ-ବ୍ୟବସ୍ଥାରେ ମାତୃ-ପ୍ରାଧାନ୍ୟର ପରିଚୟ କେତେ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଥିଲା ଏ ବିଷୟରେ ସୁନିଶ୍ଚିତ ଅନୁମାନର ସୁଯୋଗ ନ ଥିଲେ ମଧ୍ୟ ଏ ସିଦ୍ଧାନ୍ତରେ ବାଧା ନାହିଁ ଯେ ହରପ୍ପା-ସଂସ୍କୃତିରେ ବିଶେଷତଃ ଧ୍ୟାନ ଧାରଣା କ୍ଷେତ୍ରରେ ଏଇ ମାତୃ-ପ୍ରାଧାନ୍ୟର ସୁସ୍ପଷ୍ଟ ସ୍ମାରକ ରହିଥିଲା । ବସ୍ତୁତଃ ଏଇ ଦେବୀ-ପ୍ରଧାନ ବା ମାତୃ-ପ୍ରଧାନ ଧର୍ମବିଶ୍ୱାସ ହିଁ ତାର ଗୋଟିଏ ପ୍ରକୃଷ୍ଟ ପ୍ରମାଣ (୩୪) ।

"ପ୍ରାଚୀନ ମାତୃ-ପ୍ରଧାନ ଧର୍ମବିଶ୍ୱାସ ମୂଳରେ ଏଇ କୃଷି-ମୂଳକ ଅର୍ଥନୀତିର କଥା ବିଶେଷ ଗୁରୁତ୍ୱପୂର୍ଣ୍ଣ । କାହିଁକି ନା ଏଇ ଦିଗରୁ ଆର୍ଯ୍ୟ ଓ ଆର୍ଯ୍ୟ-ବହିର୍ଭୂତ ପ୍ରାଚୀନ ଧର୍ମବିଶ୍ୱାସର ମୂଳ ପାର୍ଥକ୍ୟ ବୁଝିପାରିବା ସମ୍ଭବ ।"

ଶ୍ରୀଚନ୍ଦ (୩୫) ମନ୍ତବ୍ୟ କରିଥିଲେ, "ଶାକ୍ତମାନଙ୍କ ଦେବୀ କଳ୍ପନାର ଅନୁରୂପ କଳ୍ପନାର ପରିଚୟ ଲାଭ ପାଇଁ ବୈଦିକ-ଆର୍ଯ୍ୟ-ଅଧ୍ୟୁଷିତ ଅଞ୍ଚଳ ଏବଂ ଆବେସ୍ତାର ଇରାଣୀୟମାନଙ୍କ ଅଞ୍ଚଳ ଛାଡ଼ି ଏସିଆ ମାଇନର, ସିରିଆ, ମିଶର ଏବଂ ଭୂମଧ୍ୟସାଗରର ଦେଶଗୁଡ଼ିକୁ ଯିବା ଦରକାର ।" ସିନ୍ଧୁ ସଭ୍ୟତା ଆବିଷ୍କାର ପରେ ଏଇ

ମନ୍ତବ୍ୟ ଅନୁସରଣ କରି ହିଁ ମାର୍ଶାଲ କହିଛନ୍ତି, "ସିନ୍ଧୁ ନଦୀଠାରୁ ନୀଳନଦୀ ପର୍ଯ୍ୟନ୍ତ ପ୍ରାଚୀନ ପଶ୍ଚିମ ଏସିଆର ସୁବିସ୍ତୃତ ଅଞ୍ଚଳବ୍ୟାପୀ ଏଇ ଏକ ଜାତୀୟ ଧର୍ମ-ବିଶ୍ୱାସ ହିଁ ପ୍ରଚଳିତ ଥିଲା; ଏପରି କି ଆର୍ଯ୍ୟ-ପୂର୍ବ ଏହି ଧର୍ମଗୁଡ଼ିକ ମଧ୍ୟରେ ଧ୍ୟାନ ଧାରଣାମୂଳକ ଆଦାନ ପ୍ରଦାନରେ ବାସ୍ତବ ସମ୍ଭାବନା ମଧ୍ୟ ଉପେକ୍ଷଣୀୟ ନୁହେଁ ।" ପ୍ରଶ୍ନ ହେଲା, ପ୍ରାଚୀନ ଯୁଗରେ ଏଇ ସୁବିସ୍ତୀର୍ଣ୍ଣ ଅଞ୍ଚଳବ୍ୟାପୀ ମାତୃ-ପ୍ରଧାନ ଧର୍ମବିଶ୍ୱାସର ଏପରି ଅବିଚ୍ଛିନ୍ନ ପ୍ରଭାବ କାହିଁକି ? ଏହାର କାରଣ ଏହି ସୁବିସ୍ତୀର୍ଣ୍ଣ ଅଞ୍ଚଳରେ ଯେଉଁ ସଭ୍ୟତା ବା ଅସ୍ଫୁଟ ସଭ୍ୟତାର ପରିଚୟ ମିଳିଛି, ସେଗୁଡ଼ିକର ଚରମ ଅର୍ଥନୈତିକ ଭିତ୍ତି କହିଲେ ସର୍ବତ୍ର ହିଁ କୃଷି ଉତ୍ପାଦନ ।

ଅପର ପକ୍ଷରେ, ପ୍ରାଚୀନ ଆର୍ଯ୍ୟ-ଧର୍ମର ମାତୃ-ପ୍ରାଧାନ୍ୟର ପରିଚୟ ନାହିଁ (୩୬) । ଋଗ୍‌ବେଦର ଦେବଲୋକ ପୁରୁଷ-ପ୍ରଧାନ । କାହିଁକି ନା, ପ୍ରାଚୀନ ବୈଦିକ ସମାଜ କୃଷି-ଭିତ୍ତିକ ନ ଥିଲା, ତାର ପ୍ରଧାନ ଅର୍ଥନୈତିକ ଭିତ୍ତି ପଶୁପାଳନ । ପଶୁପାଳନ ପୁରୁଷର କାର୍ଯ୍ୟ, ପଶୁପାଳନମୂଳକ ସମାଜ ପିତୃ-ପ୍ରଧାନ ବା ପୁରୁଷ-ପ୍ରଧାନ (୩୭) । ଏହି କାରଣରୁ ହିଁ ବୈଦିକ ସମାଜ ମଧ୍ୟ ଏକାନ୍ତ ଭାବରେ ପୁରୁଷ-ପ୍ରଧାନ ଥିଲା (୩୮) ଏବଂ ଏହି ସମାଜ ହିଁ ବୈଦିକ ଦେବଲୋକରେ ପ୍ରତିବିମ୍ବିତ । ସ୍ୱଭାବତଃ ହିଁ ବୈଦିକ ଦେବଲୋକ ମଧ୍ୟ ପୁରୁଷ-ପ୍ରଧାନ । ଦେବୀମାନେ ସଂଖ୍ୟାରେ ନଗଣ୍ୟ, ଗୌରବରେ ଗୌଣ । ଅତଏବ ବୈଦିକ ଓ ପ୍ରାକ୍-ବୈଦିକ ଆର୍ଯ୍ୟ ଓ ଆର୍ଯ୍ୟପୂର୍ବ ଧର୍ମବିଶ୍ୱାସର ଏଇ ମୌଳିକ ପ୍ରଭେଦଟାର ବ୍ୟାଖ୍ୟା କେବଳ ମାତ୍ର ଧର୍ମବିଶ୍ୱାସର ସ୍ତରରେ ଖୋଜିଲେ ମିଳେ ନାହିଁ; ଏ ପ୍ରଭେଦର ଚୂଡ଼ାନ୍ତ କାରଣ ଅର୍ଥନୈତିକ ।"

---

# ଭାରତୀୟ ସଂସ୍କୃତିର ଐତିହାସିକ ପରିପ୍ରେକ୍ଷୀରେ ବୈଦିକ ସାହିତ୍ୟ

ଭାରତର ସଂସ୍କୃତି କ୍ଷେତ୍ରରେ ଦୁଇଟି ମୌଳିକ ଧାରା ପ୍ରବାହିତ । ଏହା ଆମେ ପୂର୍ବର ଆଲୋଚନାରୁ ଦେଖିପାରିଲେ । ପାଶ୍ଚାତ୍ୟ ପଣ୍ଡିତମାନେ ଭାରତୀୟ ସଂସ୍କୃତି କ୍ଷେତ୍ରରେ ବୈଦିକ ସାହିତ୍ୟରେ ପ୍ରତିଫଳିତ ସଂସ୍କୃତିର ଲକ୍ଷଣଗୁଡ଼ିକୁ ଭାରତୀୟ ସଂସ୍କୃତି ଆଖ୍ୟା ଦେଇଥାନ୍ତି । ସେମାନେ ଅବୈଦିକ ସଂସ୍କୃତିକୁ ଏକ ଗୌଣ କଥା ବୋଲି ମନେକରନ୍ତି ମଧ୍ୟ । କିନ୍ତୁ ଭାରତର ହରପ୍ପା ଓ ମହେଞ୍ଜୋଦାରୋ ଖନନ ପରେ ସେଠାରୁ ଆବିଷ୍କୃତ ବହୁବିଧ ପଦାର୍ଥ ଓ କ୍ଷେତ୍ରର ପରୀକ୍ଷା ନିରୀକ୍ଷା ପରେ ଯେଉଁ ଗବେଷଣାଲବ୍ଧ ଜ୍ଞାନ ଏପର୍ଯ୍ୟନ୍ତ ମିଳିଅଛି, ସେଥିରୁ ଜଣାଯାଇଛି ଯେ ବୈଦିକ ଆର୍ଯ୍ୟମାନଙ୍କ ସଂସ୍କୃତିଠାରୁ ତାହା ଥିଲା ଭିନ୍ନ ଓ ଉନ୍ନତ । ସେହି ଉନ୍ନତ ସିନ୍ଧୁ ସଭ୍ୟତାର ଧ୍ୟାନଧାରଣା ପରବର୍ତ୍ତୀ ଆର୍ଯ୍ୟ ସଭ୍ୟତା ସହିତ ମିଶ୍ରିତ ହୋଇ ଭାରତୀୟ ସଂସ୍କୃତିର ଧାରାବାହିକତା ରକ୍ଷା କରିଛି ବେଦ । ବେଦ ରଚିତ ହେବାବେଳକୁ ଆର୍ଯ୍ୟମାନେ ଯେ କେତେ କାଳ ଧରି ତାହା ମୁଖେ ମୁଖେ ଉଚ୍ଚାରଣ କରୁଥିଲେ ଓ ଶୁଣି ଶୁଣି ମନେ ରଖୁଥିଲେ, ତାହା ନିଶ୍ଚିତ ଓ ସର୍ବସମ୍ମତ । ତେଣୁ ବେଦର ଅନ୍ୟ ନାମ "ଶ୍ରୁତି" ।

---

ଭାରତୀୟ ଦର୍ଶନ, ପୃଷ୍ଠା ୮୮ ।

ବେଦ ଅର୍ଥ ଜ୍ଞାନ ବା ପବିତ୍ର ଓ ପରମ ଜ୍ଞାନ (୪୦) । କିନ୍ତୁ ପରବର୍ତ୍ତୀ କାଳରେ 'ବେଦ' ଏକ ନିର୍ଦ୍ଦିଷ୍ଟ ସାହିତ୍ୟକୁ ହିଁ ବୁଝାଏ— ତାହା ଭାରତବର୍ଷୀୟ ତଥା ଇନ୍ଦୋ-ଇଉରୋପୀୟ ଭାଷାର ସର୍ବପ୍ରାଚୀନ ସାହିତ୍ୟ । ବେଦ-ସାହିତ୍ୟକୁ ଅନେକେ "ସଂହିତା" ବୋଲି ବୁଝିଥାନ୍ତି; କିନ୍ତୁ "ବେଦ-ସାହିତ୍ୟ" କହିଲେ ଶତାଧିକ ଗ୍ରନ୍ଥକୁ ହିଁ ବୁଝାଏ । ସାମଗ୍ରିକ ଭାବେ ଏହି ଶତାଧିକ ଗ୍ରନ୍ଥ ହିଁ ବେଦ ସାହିତ୍ୟ ବା ବୈଦିକ ସାହିତ୍ୟ ।

## ବେଦ

'ବେଦ' କହିଲେ ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ । ଏହା ବ୍ୟତୀତ ଏହି ବେଦପାଠର ସହାୟକ ହିସାବରେ ଆହୁରି କେତେ ରକମର ରଚନା ସୃଷ୍ଟି ହୋଇଥିଲି । ସାମଗ୍ରିକ ଭାବେ ସେଗୁଡ଼ିକୁ କୁହାଯାଏ—"ବେଦାଙ୍ଗ" । ବେଦାଙ୍ଗ ୬ ପ୍ରକାର :— ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ ।

## ସଂହିତା

'ସଂହିତା' ବା ସଂଗ୍ରହ—ଗାନ, ସ୍ତୋତ୍ର, ମନ୍ତ୍ର ପ୍ରଭୃତିର ସଂକଳନ । 'ବ୍ରାହ୍ମଣ'—ଗଦ୍ୟରେ ରଚିତ ଏକ ଜାତୀୟ ଯାଗଯଜ୍ଞ ବିଷୟକ ସୂତ୍ରଶୀଳ ସାହିତ୍ୟ । 'ଆରଣ୍ୟକ'—ଅରଣ୍ୟରେ ରଚିତ ଏକ ଜାତୀୟ ସାହିତ୍ୟ, ବିଶ୍ୱ-ରହସ୍ୟର ସମାଧାନ ଅନ୍ୱେଷଣ ହିଁ ତାର ପ୍ରଧାନ ଉଦ୍ଦେଶ୍ୟ । ଉପନିଷଦ—ଆକ୍ଷରିକ ଅର୍ଥରେ ଗୁହ୍ୟ ଜ୍ଞାନ, ଦାର୍ଶନିକ ତତ୍ତ୍ୱର ବିଚାର ହିଁ ଏ ସାହିତ୍ୟର ପ୍ରଧାନ ବିଷୟବସ୍ତୁ ।

ସଂହିତା ହେଉଛୁ ଚ୍ଚାରୋଟି:— ୧ — ଋଗବେଦ-ସଂହିତା, ୨— ସାମବେଦ-ସଂହିତା, ୩—ଯଜୁର୍ବେଦ-ସଂହିତା, ୪—ଅଥର୍ବବେଦ-ସଂହିତା । ସାଧାରଣତଃ ଏହି ସଂହିତା ଶବ୍ଦ ବାଦ୍ ଦେଇ ଋଗ୍‌ବେଦ, ଯଜୁର୍ବେଦ ଇତ୍ୟାଦି ନାମରେ ଉଲ୍ଲେଖ କରାଯାଏ ।

ଏଥି ମଧ୍ୟରୁ ଯଜୁର୍ବେଦ-ସଂହିତା ପୁଣି ଦୁଇ ଭାଗରେ ବିଭକ୍ତ— କୃଷ୍ଣ-ଯଜୁର୍ବେଦ ଏବଂ ଶୁକ୍ଳ-ଯଜୁର୍ବେଦ । ଶୁକ୍ଳ-ଯଜୁର୍ବେଦ କେବଳ ମାତ୍ର ମନ୍ତ୍ରର ସଂକଳନ; କୃଷ୍ଣ-ଯଜୁର୍ବେଦରେ ମନ୍ତ୍ର ସହିତ କେତେକ ଭାଷ୍ୟ ବା ବ୍ୟାଖ୍ୟା ଧରଣର ରଚନା ମଧ୍ୟ ସମ୍ମିଶ୍ରଣ ଅଛି । ତେଣୁ ସାଧାରଣତଃ ନାମ ଦୁଇଟିରୁ ବ୍ୟାଖ୍ୟା କରାଯାଏ 'ଶୁକ୍ଳ' ଅର୍ଥ 'ବିଶୁଦ୍ଧ' ଏବଂ 'କୃଷ୍ଣ' ଅର୍ଥ 'ଅବିଶୁଦ୍ଧ' ବା "ମିଶ୍ରିତ" ମନ୍ତ୍ର ସଂକଳନ ।

## ବ୍ରାହ୍ମଣ

କୃଷ୍ଣ-ଯଜୁର୍ବେଦ ସଂହିତାରେ ମନ୍ତ୍ର ବ୍ୟତୀତ ମଧ୍ୟ ନାନା ସ୍ଥାନରେ ଯଜ୍ଞର ଉଦ୍ଦେଶ୍ୟ ଓ ବ୍ୟାଖ୍ୟା ସଂକ୍ରାନ୍ତ ଆଲୋଚନା ଏବଂ ବିଭିନ୍ନ ମତବାଦର ଉଲ୍ଲେଖ ମିଳେ; ଅନୁମାନ ହୁଏ, ଏଇ ଅଂଶଗୁଡ଼ିକରେ ପରବର୍ତ୍ତୀ କାଳର 'ବ୍ରାହ୍ମଣ-ସାହିତ୍ୟ'ର ସୂତ୍ର (୪୧) ଖୋଜିଲେ ମିଳେ । ପୃଥିବୀର ଇତିହାସରେ ଯାଗଯଜ୍ଞମୂଳକ କ୍ରିୟାକାଣ୍ଡର ଏପରି ଜଟିଳ ଓ ବିଶାଳ ସାହିତ୍ୟ କେଉଁଠି ନାହିଁ । 'ବ୍ରାହ୍ମଣ'ଗୁଡ଼ିକ ଗଦ୍ୟରେ ରଚିତ । ପ୍ରାଚୀନ ବୈଦିକ ଗାନରେ ଯେଉଁ ସୃଜନୀଶକ୍ତିର ପରିଚୟ ମିଳେ, 'ବ୍ରାହ୍ମଣ'ଗୁଡ଼ିକ ମଧ୍ୟରେ ତାର କୌଣସି ସଙ୍କେତ ବି ନାହିଁ । 'ବ୍ରାହ୍ମଣ' ଗ୍ରନ୍ଥ ନିଶ୍ଚୟ ଅନେକ ଥିଲା । ତା ମଧ୍ୟରୁ ବହୁ ଗ୍ରନ୍ଥ ବିଲୁପ୍ତ ହୋଇଅଛି । କିନ୍ତୁ 'ବ୍ରାହ୍ମଣ' ସାହିତ୍ୟ

ହିସାବରେ ଆଜ ଯାହା ମିଳେ ତାର ମୋଟ କଳେବର ମଧ୍ୟ ସୁବିଶାଳ । ପ୍ରଧାନ 'ବ୍ରାହ୍ମଣ'ଗୁଡ଼ିକ ହେଉଛି—

କ । ଋଗ୍‌ବେଦ ସଂହିତା ସହିତ ସଂଯୁକ୍ତ—

ଐତରେୟ ବ୍ରାହ୍ମଣ, କୌଷୀତକ ବ୍ରାହ୍ମଣ

ଖ । ସାମବେଦ-ସଂହିତା ସହିତ ସଂଯୁକ୍ତ—

ତାଣ୍ଡ୍ୟ ମହାବ୍ରାହ୍ମଣ, ନାମାନ୍ତରେ, ପଞ୍ଚବିଂଶ ବ୍ରାହ୍ମଣ

ଗ । କୃଷ୍ଣ-ଯଜୁର୍ବେଦ-ସଂହିତା ସହିତ ସଂଯୁକ୍ତ—

ତୈତ୍ତିରୀୟ ବ୍ରାହ୍ମଣ, କଠ ବ୍ରାହ୍ମଣ

ଘ । ଶୁକ୍ଳ-ଯଜୁର୍ବେଦ ସଂହିତା ସହିତ ସଂଯୁକ୍ତ —

ଶତପଥ ବ୍ରାହ୍ମଣ

ଙ । ଅଥର୍ବବେଦ-ସଂହିତା ସହିତ ସଂଯୁକ୍ତ —

ଗୋପଥ ବ୍ରାହ୍ମଣ ।

---

# ଆରଣ୍ୟକ ଓ ଉପନିଷଦ

ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଶେଷାଂଶରେ ଆଉ ଏକ ଜାତୀୟ ରଚନା ସଂଯୋଜିତ ହୋଇଥିବା ଦେଖାଯାଏ । ତାର ନାମ "ଆରଣ୍ୟକ" ଓ "ଉପନିଷଦ" ।

ପ୍ରକୃତ ପ୍ରାଚୀନ ଓ ବୈଦିକ ଉପନିଷଦ କୌଣସି ନା କୌଣସି ବ୍ରାହ୍ମଣ ଗ୍ରନ୍ଥ ସହିତ ସଂଯୋଜିତ ଏବଂ ପ୍ରତ୍ୟେକଟି "ବ୍ରାହ୍ମଣ" ହିଁ କୌଣସି ନା କୌଣସି ବେଦ ବା ବେଦର ଶାଖା ସହିତ ସଂଯୋଜିତ । ଅତଏବ ଏଠାରେ ବେଦର କେଉଁ କେଉଁ ଶାଖା ସହିତ କେଉଁ କେଉଁ "ବ୍ରାହ୍ମଣ", "ଆରଣ୍ୟକ" ଓ "ଉପନିଷଦ" ସଂପୃକ୍ତ, ତାହାର ଏକ ତାଲିକା ପ୍ରଦତ୍ତ ହେଲା ।

| ସଂହିତା | ବ୍ରାହ୍ମଣ | ଆରଣ୍ୟକ | ଉପନିଷଦ |
|---|---|---|---|
| ଋଗ୍‌ବେଦ | ୧ । ଐତରେୟ<br>୨ । କୌଷୀତକି | ୧ । ଐତରେୟ<br>କୌଷୀତକି | ୧ । ଐତରେୟ ଉପନିଷଦ<br>୨ । କୌଷୀତକି ଉପନିଷଦ |
| ସାମବେଦ | ୧ । ପଞ୍ଚବିଂଶ, ବା ତାଣ୍ଡ୍ୟମହା<br>୨ । ଷଡ୍‌ବିଂଶ<br>୩ । ଜୈମିନୀୟ | ୧ । ଆରଣ୍ୟକ-ସଂହିତା<br>୨ । ଆରଣ୍ୟକ-ଗାନ<br>୩ । ଜୈମିନୀୟ-ଉପନିଷଦ ବ୍ରାହ୍ମଣ | ୧ । ଛାନ୍ଦୋଗ୍ୟ-ଉପନିଷଦ<br>୨ । କେନ-ଉପନିଷଦ |

| | | | |
|---|---|---|---|
| କୃଷ୍ଣ-ଯଜୁର୍ବେଦ | ୧ । କଠ<br>୨ । ତୈତ୍ତିରୀୟ | ୧ । କଠ<br>୨ । ତୈତ୍ତିରୀୟ | ୧ । କଠ-ଉପନିଷଦ<br>୨ । ତୈତ୍ତିରୀୟ-ଉପନିଷଦ<br>୩ । ତୈତ୍ରାୟଣୀୟ ଉପନିଷଦ ବା ମୈତ୍ରୀ ଉପନିଷଦ<br>୪ । ଶ୍ୱେତାଶ୍ୱତର-ଉପନିଷଦ |
| ଶୁକ୍ଲ-ଯଜୁର୍ବେଦ | ୧ । ଶତପଥ | ୧ । ଶତପଥ | ୧ । ବୃହଦାରଣ୍ୟକ ଉପନିଷଦ<br>୧ । ଈଶା-ଉପନିଷଦ |
| ଅଥର୍ବ ବେଦ | ୧ । ଗୋପାଥ | — | ୧ । ମୁଣ୍ଡକ-ଉପନିଷଦ<br>୨ । ମାଣ୍ଡୁକ୍ୟ-ଉପନିଷଦ<br>୩ । ପ୍ରଶ୍ନ-ଉପନିଷଦ |

ଏହା ବ୍ୟତୀତ କୃଷ୍ଣ-ଯଜୁର୍ବେଦ ସହିତ ସଂଯୁକ୍ତ "ମହାନାରାୟଣ ଉପନିଷଦ" ନାମକ ଗୋଟିଏ ଉପନିଷଦ ଅଛି । କିନ୍ତୁ ଉପନିଷଦର ଦାର୍ଶନିକ ତତ୍ତ୍ୱ ଆଲୋଚନାରେ ଏହାକୁ ସାଧାରଣତଃ ଖୁବ୍ ବେଶି

ଗୁରୁତ୍ୱ ଦିଆଯାଏ ନାହିଁ । ପ୍ରାଚୀନ ଓ ମୂଳ ଉପନିଷଦ ହିସାବରେ ଉପରୋକ୍ତ ତେରଟିକୁ ହିଁ ଉଲ୍ଲେଖ କରାଯାଏ ।

ଏହି ବୈଦିକ ସାହିତ୍ୟ-ସମ୍ଭାରରୁ ସର୍ବପ୍ରାଚୀନ ଗ୍ରନ୍ଥ ହେଉଛି ଋଗ୍‌ବେଦ, ଯାହାର ଆଲୋଚନାକୁ ଭିତ୍ତି କରି ତତ୍‌କାଳୀନ ଆର୍ଯ୍ୟ-ସଂସ୍କୃତିର ରୂପରେଖ ଜାଣି ହେଉଛି । ତେଣୁ ଏହାର ରଚନାକାଳ ସମ୍ପର୍କରେ ସମ୍ୟକ୍ ଆଲୋଚନା ଅପ୍ରାସଙ୍ଗିକ ହେବ ନାହିଁ ।

---

# ବେଦର ରଚନାକାଳ

ବେଦର ରଚନାକାଳ ସମ୍ପର୍କରେ ବହୁ ମତ ରହିଛି । କିନ୍ତୁ ଏଥିରେ କାହାର ଦ୍ୱିମତ ନାହିଁ ଯେ ଏହାର ରଚନାକାଳ ଦୀର୍ଘଦିନବ୍ୟାପୀ, ଅର୍ଥାତ୍ ଏହି ସାହିତ୍ୟ ରଚିତ ହେବାକୁ ଶହ ଶହ ବର୍ଷ ବିତିଛି । 'ଶ୍ରୁତି'ଠାରୁ ବେଦରଚନାର ସମୟର ଦୀର୍ଘତା ମଧ୍ୟ ସହସ୍ର ବର୍ଷ । ତା' ବ୍ୟତୀତ ବୈଦିକ ସାହିତ୍ୟର ପ୍ରାଚୀନତମ ଗ୍ରନ୍ଥ ଋଗ୍‌ବେଦର ରଚନାକାଳଠାରୁ ଉପନିଷଦ ରଚନାକାଳର ବ୍ୟବଧାନ ମଧ୍ୟ କେତେକ ଶହ ବର୍ଷ । ତେଣୁ ଏହି ବିଶାଳ ଓ ବିସ୍ତୀର୍ଣ୍ଣ ସାହିତ୍ୟରେ ବୈଦିକ ସମାଜର ଯେଉଁ ନିଦର୍ଶନ ମିଳେ, ତାହା ଭାରତ ଇତିହାସର ଏକ ଅମୂଲ୍ୟ ଉପାଦାନ । ଏପରି ସାହିତ୍ୟିକ ନିଦର୍ଶନ ଓ ସାମାଜିକ ଚିନ୍ତା-ଚେତନା ଓ ସମାଜ-ବ୍ୟବସ୍ଥାର ନିଦର୍ଶନ ମାନବ ଜାତିର ଇତିହାସରେ ଆଉ କେଉଁଠୁ ମିଳେ ନାହିଁ । ତେଣୁ ଭାରତର ଏହି ସର୍ବପ୍ରାଚୀନ ସାହିତ୍ୟର ମୂଲ୍ୟ ଅତୁଳନୀୟ ।

ତେବେ ଏହାର ରଚନାକାଳ ସଂପର୍କରେ ମାକ୍ସମୁଲର ଋଗ୍‌ବେଦ ସଂହିତା ସଙ୍କଳନ-କାଳ ଖ୍ରୀଷ୍ଟପୂର୍ବ ୧୦୦୦ ଓ ସଂକଳନଭୁକ୍ତ ସୂକ୍ତଗୁଡ଼ିକର ରଚନାକାଳ ଖ୍ରୀଷ୍ଟପୂର୍ବ ୧୨୦୦-୧୦୦୦ ବୋଲି ନିର୍ଣ୍ଣୟ କରିଛନ୍ତି । ଜର୍ମାନ୍ ପଣ୍ଡିତ ଜାକୋବି କହିଛନ୍ତି ଯେ ଋଗ୍‌ବେଦର ରଚନାର ଆରମ୍ଭକାଳ ହେଉଛି ଖ୍ରୀଷ୍ଟଜନ୍ମର ୪୫୦୦ ବର୍ଷ ପୂର୍ବର । ବାଳଗଙ୍ଗାଧର ତିଳକ ମଧ୍ୟ ବେଦରେ ଜ୍ୟୋତିଷ ବିଷୟକ ସୂଚନା ଉପରେ ନିର୍ଭର କରି ବେଦ-ରଚନା ଖ୍ରୀଷ୍ଟପୂର୍ବ ୬୦୦୦ଠାରୁ ସୂତ୍ରପାତ ହୋଇଥିଲା ବୋଲି

କହିଛନ୍ତି । ହାର୍ଟେଲ କହୁଛନ୍ତି, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ମଧ୍ୟ ଋଗ୍‌ବେଦ-ସଂକଳନ ସଂପୂର୍ଣ୍ଣ ହୋଇ ନାହିଁ ।

ଏ ସମସ୍ତ ଭିନ୍ନ ମତ ବିଶ୍ଳେଷଣ କରି ଉଇନ୍‌ଟାର୍‌ନିଥସ (Winternitz) (୪୨) "ପାର୍ଶ୍ୱ, ମହାବୀର ଏବଂ ବୁଦ୍ଧଙ୍କ ଆଗରୁ ସମଗ୍ର ବୈଦିକ ସାହିତ୍ୟ ପୂର୍ଣ୍ଣାଙ୍ଗ ରୂପ ଲାଭ କରିଛି" ବୋଲି ଜଣାଇଛନ୍ତି ।

ବୁଦ୍ଧଙ୍କ ମୃତ୍ୟୁ ତାରିଖ ଆନୁମାନିକ ଖ୍ରୀଷ୍ଟପୂର୍ବ ୪୮୩, ମହାବୀରଙ୍କ ମୃତ୍ୟୁ ତାରିଖ ଆନୁମାନିକ ଖ୍ରୀଷ୍ଟପୂର୍ବ ୪୬୮ । ଅତଏବ ଖ୍ରୀଷ୍ଟପୂର୍ବ ୫ମ ଶତକ ପୂର୍ବରୁ ହିଁ ସମଗ୍ର ବୈଦିକ ସାହିତ୍ୟ ପୂର୍ଣ୍ଣାଙ୍ଗ ରୂପ ଗ୍ରହଣ କରିଥିବା ସମ୍ଭବ । ଏହା ଖ୍ରୀଷ୍ଟପୂର୍ବ ୫୦୦ ପୂର୍ବର ରଚନା ହେଲେ ମଧ୍ୟ କ୍ରମାନ୍ୱୟରେ ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ ରଚନା ଲାଗି ଯେ ବହୁ ଶତାବ୍ଦୀ ଲାଗିଥିବ, ଏହା ଅନୁମାନ କରାଯାଇପାରେ ।

---

# ବୈଦିକ ସମାଜ

ମହାଭାରତୀୟ ସଂସ୍କୃତିର ବିଗ୍ରହ ଏକ ବିସ୍ତୃତ ଓ ଜଟିଳ ବ୍ୟାପାର । ତାର କାରଣ ହେଉଛି—ଏହି ସଂସ୍କୃତିର ବିକାଶ ଭାରତର ଭିନ୍ନାଂଶରେ ଲକ୍ଷ୍ୟ କରାଯାଏ ଏବଂ ତାହା ଦେଶର ବ୍ୟାପକ ଅଂଶରେ ବିସ୍ତୃତି ଲାଭ କରିବା ଏବଂ ଶତାବ୍ଦୀ ଶତାବ୍ଦୀ ବ୍ୟାପି ତାର ବିକାଶ ହୋଇ ଆସିଥିବା ଲକ୍ଷ୍ୟ କରାଯାଏ । ଏହି କାରଣରୁ ଭାରତୀୟ ସଂସ୍କୃତି ବୈଚିତ୍ର୍ୟପୂର୍ଣ୍ଣ ଓ ଜଟିଳ ହୋଇପଡ଼ିବା ସ୍ୱାଭାବିକ । ବୈଦିକ ସାହିତ୍ୟର ଆଲୋଚନା ଓ ଗବେଷଣା ଏପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନାହିଁ । ବୈଦିକ ସାହିତ୍ୟରେ ପ୍ରତିଫଳିତ ସମାଜ ବ୍ୟବସ୍ଥା ଓ ବୈଦିକ ସମାଜର ଜୀବନଚିତ୍ର ଠିକ୍‌ରୂପେ ତତ୍‌କାଳୀନ ସମାଜର ପୂର୍ଣ୍ଣାଙ୍ଗ ଚିତ୍ର ବହନ ନ କରିଥିବା ଅନୁମାନକୁ ଏକବାରେ ଏଡ଼ାଇ ଦେଇ ହେବ ନାହିଁ । କାରଣ ଏହା ଲିଖିତ ହେବାବେଳକୁ ସମାଜର ଯେଉଁସବୁ ପରିବର୍ତ୍ତନ ହୋଇଥିବ ଏବଂ ଏହାକୁ ଯେଉଁମାନେ ଲିପିବଦ୍ଧ କରିଥିବେ—ସେମାନେ ସମାଜର ସାଧାରଣ ଲୋକଙ୍କଠାରୁ ନିଶ୍ଚୟ ଉନ୍ନତ ଥିବେ ଅର୍ଥାତ୍ ଶିଷ୍ଟ ବା ସଂସ୍କୃତିବାନ୍ ହୋଇଥିବେ । ସେହି ସମାଜରେ ଏହି 'ଶିଷ୍ଟ' ବ୍ୟକ୍ତିମାନଙ୍କର ଗୌରବ ଓ ବିଶିଷ୍ଟ ପ୍ରବୃତ୍ତିଗୁଡ଼ିକ ଏଥିରେ ପ୍ରତିଫଳିତ ହେବା ସ୍ୱାଭାବିକ । ତଥାପି ଏହା କୁହାଯାଇପାରେ ଯେ ତତ୍‌କାଳୀନ ଭାରତୀୟ ଜୀବନ-ଦର୍ଶନ ବା ଦୃଷ୍ଟିକୋଣର ପରିପ୍ରକାଶର ଯେଉଁ ସଙ୍କେତ ବୈଦିକ ସାହିତ୍ୟ ଧାରଣ କରିଛି, ତାହା ହଜାର ହଜାର ବର୍ଷର ସମାଜବିକାଶର ପ୍ରତିଫଳନ ଓ ଏହା ଆର୍ଯ୍ୟ-ସମାଜର ଏକ ଉତ୍କର୍ଷକାଳରେ ହିଁ ସମ୍ପୂର୍ଣ୍ଣ ହୋଇଛି ।

ଏହା ସ୍ପଷ୍ଟ ଯେ ହିନ୍ଦୁ ସଂସ୍କୃତି, ଯାହା ସିନ୍ଧୁ ସଭ୍ୟତାର ଦାନ—ତାହା ଆର୍ଯ୍ୟ ସଂସ୍କୃତିରେ ମିଶିଯାଇଛି । ଏହି ଉଭୟ ସଂସ୍କୃତିର ମିଳନ ଓ ତାହାର ବିକାଶର ସଂକେତ ବୈଦିକ ସାହିତ୍ୟରୁ ଯାହା ମିଳେ, ତାହା କେବେହେଁ ସମାଜ-ନିରପେକ୍ଷ ନୁହେଁ କି ଆର୍ଥିକ ନିୟମକୁ ଅଗ୍ରାହ୍ୟ କରି ନାହିଁ ।

ପ୍ରାଚୀନ ଭାରତର ଆର୍ଥିକ ବିବର୍ତ୍ତନର ଇତିହାସ ଜାତକର ଅନୁବାଦ ଓ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଆଲୋଚିତ ହେବା ପରେ ଯେପରି ଜଣାଯାଇଛି, ଠିକ୍ ସେହିପରି ଆର୍ଥିକ ଅବସ୍ଥାର ଚିତ୍ର ବୈଦିକ ସାହିତ୍ୟରେ ମିଳେ ନାହିଁ, ଯାହା ଠିକ୍‌ରୂପେ ତତ୍‌କାଳୀନ ସାମାଜିକ ଅବସ୍ଥାକୁ ଆର୍ଥିକ ଗତି ନିୟମରେ ବୁଝାଇପାରିବ । ତେଣୁ ସାମାଜିକ ଅବସ୍ଥାର ବିବରଣ ଜଟିଳ ରୂପ ଧାରଣ କରିଛି । ସେଥିପାଇଁ ଭାରତୀୟ ଇତିହାସ ବା ସାଂସ୍କୃତିକ ଜୀବନ ଅଧ୍ୟୟନରେ ଆମକୁ ୟୁରୋପୀୟ ଇତିହାସ ଓ ସଂସ୍କୃତି ବିଚାର-ଆଲୋଚନାର ଠିକ ଓଲଟା ଦିଗରୁ ବିଚାର କରିବାକୁ ହୁଏ, ଅର୍ଥାତ୍ ସାଂସ୍କୃତିକ ଉପାଦାନରୁ ସମାଜ ଓ ଆର୍ଥିକ ଉପଯୋଗ ଅନୁମାନ କରିବାକୁ ହୋଇଥାଏ । ଫଳରେ ଏଥିରେ ଅନେକ ଭୁଲ ଓ ବିବାଦର ଅବକାଶ ରହେ ।

---

# ଋଗ୍‌ବେଦର ସମସାମୟିକ ଅଦେଶୀୟ ଧର୍ମ ଓ ସାହିତ୍ୟ ସହିତ ସାମଞ୍ଜସ୍ୟ

ଋଗ୍‌ବେଦ ଆମ ଦେଶର ତାମ୍ରଯୁଗର ଦାନ । ତାମ୍ରଯୁଗର ଶେଷଭାଗରେ ଯେତେବେଳେ ସପ୍ତସିନ୍ଧୁ (ପଞ୍ଜାବ)ର ଋଷିମାନେ ଋକ୍‌ର ରଚନା କରିଥିଲେ, ଯେତେବେଳେ କି ସୁଦାସ "ଦଶରାଜ୍ଞ" ଯୁଦ୍ଧରେ ବିଜୟପ୍ରାପ୍ତ ହୋଇ ଆର୍ଯ୍ୟମାନଙ୍କର ଜନ-ବ୍ୟବସ୍ଥା ସ୍ଥାନରେ ଏକତାବଦ୍ଧ ସାମନ୍ତବାଦୀ ବ୍ୟବସ୍ଥା ପ୍ରତିଷ୍ଠା କରିବାର ପ୍ରଯତ୍ନ କଲେ । ଅବଶ୍ୟ ଊନବିଂଶ ବା ବିଂଶ ଶତାବ୍ଦୀର ସାମନ୍ତବାଦ ଅର୍ଥରେ ଏହାକୁ ବୁଝିବା ଭୁଲ ହେବ । ସପ୍ତସିନ୍ଧୁର ଆର୍ଯ୍ୟମାନଙ୍କର ସଂସ୍କୃତି ପ୍ରଧାନତଃ ପଶୁପାଳନ ସଂସ୍କୃତି ଥିଲା । ଆର୍ଯ୍ୟମାନେ କୃଷି ଜାଣିଥିଲେ ଏବଂ ଯବ ଚାଷ କରୁଥିଲେ । କିନ୍ତୁ ଏହା ସେମାନଙ୍କର ମୁଖ୍ୟ ଜୀବିକା ନ ଥିଲା, ଏହା ଥିଲା ଜୀବିକାର ଗୌଣ ସାଧନ । ସେମାନେ ନିଜର ଗୋରୁ-ଅଶ୍ୱ, ଅଜ-ଅବିଜ ( ମେଣ୍ଢା-ଛେଳି )କୁ ସେମାନଙ୍କର ପରମ ଧନ ବୋଲି ବିଚାରୁଥିଲେ । ସେମାନଙ୍କର ଖାଦ୍ୟପେୟ ଓ ପୋଷାକର ଏହା ସବୁଠାରୁ ବଡ଼ ସାଧନ ଥିଲା । ନିଜର ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ମଧ୍ୟ ଏମାନଙ୍କ ପକ୍ଷରେ ଏହାର ବଡ଼ ଆବଶ୍ୟକତା ଥିଲା । ପଶୁ ଧନକୁ ପରମ ଧନ ବିଚାରିବାର କାରଣ ହେଉଛି ଆର୍ଯ୍ୟମାନଙ୍କର ନଗର ନ ଥିଲା, ସେମାନଙ୍କର ପ୍ରାୟ ଚାରଣଭୂମିଯୁକ୍ତ ଗ୍ରାମର ଆବଶ୍ୟକତା ଥିଲା ।

ଏହି ପ୍ରକାର ଋଗ୍‌ବୈଦିକ ଆର୍ଯ୍ୟମାନଙ୍କର ସଂସ୍କୃତି ପଶୁପାଳକ ଓ ଗ୍ରାମିଣ ସଂସ୍କୃତି ହିଁ ଥିଲା । ଏହି ମୂଳ କଥାକୁ ଆଗେ ମନେ ରଖିବା ଉଚିତ ।

ଋଗ୍‌ବେଦ ବିଷୟରେ ବିଚାର କରିବାବେଳେ ଏକଥା ମଧ୍ୟ ମନେ ରଖିବା ଉଚିତ ଯେ ଋଗ୍‌ବୈଦିକ ଆର୍ଯ୍ୟ ଭାରତରେ ହିଁ କେବଳ ନ ଥିଲେ, ବରଂ ଏମାନଙ୍କର ଭାଷା ଓ ପୂଜ୍ୟ ଭାବନ୍ଧାବନାର ସମ୍ପର୍କ ଭାରତ ବାହାରେ ମଧ୍ୟ ଥିଲା । ସବୁଠାରୁ ନିକଟତମ ସମ୍ବନ୍ଧ ଥିଲା ଇରାନ୍‌ । ସୌଭାଗ୍ୟକ୍ରମେ ସେମାନଙ୍କର ଧାର୍ମିକ ଆଚାର-ବିଚାର ଜାଣିବା ପାଇଁ ଆବେସ୍ତା ଓ ପାରସୀ ଧର୍ମରେ ଏବେ ମଧ୍ୟ ତାହା ସଂରକ୍ଷିତ ହୋଇ ରହିଛି । ତୁଳନାତ୍ମକ ଅଧ୍ୟୟନରୁ ଜଣାଯାଏ ଯେ, ବେଦ ଓ ଆବେସ୍ତାକୁ ମାନୁଥିବା ଲୋକେ ନିଜର ଭାଷା ଓ ଧର୍ମ ଉଭୟ କ୍ଷେତ୍ରରେ ପରସ୍ପରର ନିକଟବର୍ତ୍ତୀ ଥିଲେ । ଇରାଣୀମାନଙ୍କ ବ୍ୟତୀତ ଅନ୍ୟ ଯେଉଁମାନଙ୍କ ସହିତ ବୈଦିକ ଆର୍ଯ୍ୟଙ୍କ ସମ୍ବନ୍ଧ ଥିଲା, ସେମାନେ ହେଉଛନ୍ତି ସ୍ଲାଭ ଜାତି । ସ୍ଲାଭ—ସ୍ଲାବ—(ଶକ ଲବ)ର ହିଁ ଅପଭ୍ରଂଶ । ଋଷୀୟ, ଅକ୍ରଇନୀ, ବେଲରୁସୀ, ବୁଲଗାରୀ, ଯୁଗୋସ୍ଲୋଭୀ, ଚେକୋସ୍ଲୋଭୀ, ପୋଲେ ପ୍ରଭୃତି ସ୍ଲାଭ ଜାତିମାନେ ଶକମାନଙ୍କର ସନ୍ତାନ । ଏମାନେ ନିଜର ପୂର୍ବଜମାନଙ୍କ ଧର୍ମକୁ ଆଜକୁ ସାତ ଆଠ ଶହ ବର୍ଷ ପୂର୍ବରୁ ଛାଡ଼ି ଦେଇଛନ୍ତି । ଇସାଇ ଧର୍ମ ସ୍ୱୀକାର କରିବା ସମୟରେ ଏମାନଙ୍କ ପୂର୍ବଜମାନଙ୍କର ଲିପିଜ୍ଞାନ ନ ଥିଲା ଏବଂ ଏମାନେ ନିଜର ପବିତ୍ର ବିଶ୍ୱାସ ଓ ଦେବତାମାନଙ୍କ ସମ୍ବନ୍ଧରେ ଆବେସ୍ତା ବା ବେଦ ପରି କୌଣସି ପ୍ରାଚୀନ ସଂଗ୍ରହ ରଖି ନ ଥିଲେ । ଯାହା ବା ପୁରୁଣା ଗାଥା ଇତ୍ୟାଦି ରହିଥିଲା, ତାହା ଇସାଇ ଧର୍ମ ସ୍ୱୀକାର କରିବା ପରେ ତାହାସବୁ ପୁରୁଣା ବିଶ୍ୱାସ ସହିତ ନଷ୍ଟ ହୋଇଗଲା । ପେରୁନ, 'ସୂର୍ଯ୍ୟ ଆଦି ସ୍ଲାଭ ଦେବତାମାନଙ୍କ ମୂର୍ତ୍ତି ଗୁଡ଼ିକ

ମଧ୍ୟ ଏପରି ଧ୍ୱଂସ ହୋଇଯାଇଛି ଯେ, ସଂଗ୍ରହଶାଳାରେ ମଧ୍ୟ ସେଗୁଡ଼ିକର ପତ୍ତା ମିଳେ ନାହିଁ ।

ଇରାଣୀ ଓ ଶକମାନଙ୍କ ବ୍ୟତୀତ ଲେଟ୍-ଲିଥୁଆନୀୟମାନଙ୍କର ସମ୍ବନ୍ଧ ନିକଟତର । ଏହି ଦୁଇଟି ଭାଷା ସାଙ୍ଗ ଭଉଣୀ ଓ ଗୋଟିଏ ଅନ୍ୟଟିର ଖୁବ ନିକଟତମ । ଏହାର ମଧ୍ୟ ସହାୟତା ମିଳିଥାନ୍ତା, ଯଦି ପ୍ରାଚୀନ ପାଦ୍ରୀମାନଙ୍କ ଧର୍ମାନ୍ଧତାରୁ ସବୁ ସାହିତ୍ୟ ନଷ୍ଟ କରିବା ଦ୍ୱାରା ନିଆ ନ ଯାଇଥାନ୍ତା । ଲିଥୁଆନୀ ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ତାହାର ପ୍ରାଚୀନ ଧର୍ମରେ ଦୃଢ଼ ଥିଲା । ଏହାର ଦେବତାମାନଙ୍କ ମଧ୍ୟରେ ବୈଦିକ ଦେବତାମାନଙ୍କ ପ୍ରତିଧ୍ୱନି ମିଳେ । ବାବର-ହୁମାୟୁନ କିମ୍ବା ବିଦ୍ୟାପତି-ଜାୟସୀଙ୍କ ସମୟ ପର୍ଯ୍ୟନ୍ତ ଲିଥୁଆନୀ ନିଜର ପୁରୁଣା ସାଂସ୍କୃତିକ ବିଧିଗୁଡ଼ିକୁ ରକ୍ଷା କରିଥିଲେ । ପରେ ଥରେ ଇସାଇ ଧର୍ମ ସ୍ୱୀକାର କରିନେବା ପରେ ସେମାନେ ନିଜର ପୁରୁଣା ଧାର୍ମିକ ସଂପର୍କକୁ ନଷ୍ଟ କରିଦେଲେ । ତେଣୁ ଭାଷା ଦୃଷ୍ଟିରୁ ଲିଥୁଆନୀ ବୈଦିକ ଭାଷାର ଏତେ ନିକଟବର୍ତ୍ତୀ ନୁହେଁ, ଯେତେ ନିକଟବର୍ତ୍ତୀ ରୁଷ ଭାଷା ।

ଏହା ପରେ ପଶ୍ଚିମ ଇଉରୋପର ପ୍ରାଚୀନ ଗ୍ରୀକ୍, ଲାଟିନ୍, ଆଉ ଆଧୁନିକ ଜର୍ମାନ୍, ଫ୍ରେଞ୍ଚ, ଇଂରେଜୀ ଆଦି ଭାଷାମାନଙ୍କର ସମ୍ବନ୍ଧ ବୈଦିକ ଭାଷା ସହିତ ରହିଛି । ବେଦର ଅର୍ଥ କହିବାରେ ଏହିସବୁ ଭାଷାର ଅଧିକାର ଅଛି । ଆମର କେତେକ ସଂସ୍କୃତ ଧାତୁର ପ୍ରୟୋଗ ପ୍ରାଚୀନ କିମ୍ବା ନବୀନ ସଂସ୍କୃତ ସାହିତ୍ୟରେ ମିଳେ ନାହିଁ । କିନ୍ତୁ ସେହିସବୁ ଧାତୁର ଉପଯୋଗ ଭାରତ ବାହାରେ ଏହିସବୁ ଭାଷାରେ ଦେଖାଯାଏ । ଉଦାହରଣତଃ "ଦାବନା" ଶବ୍ଦ ସଂସ୍କୃତରେ ପ୍ରଯୁକ୍ତ ହେଉ ନାହିଁ, ଆମର ଭାଷାରେ ଏହା ମହଜୁଦ ଅଛି; କିନ୍ତୁ ରୁଷ

ଭାଷାରେ ଦର୍‌ଲ୍ଭାତ୍ ମିଳୁଛି । ସପ୍ତସିନ୍ଧୁ ବେଦରେ ମିଳେ, କିନ୍ତୁ ଆବେସ୍ତା ଓ ଇରାନୀ ପ୍ରାଚୀନ ସାହିତ୍ୟରେ ମଧ୍ୟ ମିଳେ, ଯାହା କେବଳ ସାତ ନଦୀର ଅର୍ଥରେ ନୁହେଁ, ବରଂ ସାତନଦୀବେଷ୍ଟିତ ପ୍ରଦେଶ ଓ ସେଥିରେ ବସବାସ କରୁଥିବା ଲୋକମାନଙ୍କ ପାଇଁ ମଧ୍ୟ ବୁଝାଇଥାଏ । ଜୈମିନି ବେଦ ଶବ୍ଦ ଅର୍ଥ କରିବାକୁ ଯାଇ ଅନେକ ସ୍ଥାନରେ ଆର୍ଯ୍ୟଙ୍କ ପ୍ରସିଦ୍ଧି ଛାଡ଼ି ମ୍ଲେଚ୍ଛଙ୍କ ପ୍ରସିଦ୍ଧିକୁ ସ୍ୱୀକାର କରିଛନ୍ତି ।

ଚୋଦିତଂ ତୁ ପ୍ରତୀୟେତାବିରୋଧାତ୍ ପ୍ରମାଣେନ ।
(ମୀମାଂସା ୧।୩।୭।୧୦)

ଆର୍ଯ୍ୟ (ଭାରତୀୟ)ଙ୍କର କୌଣସି କୌଣସି ଶବ୍ଦାର୍ଥ ପରମ୍ପରା ଲୁପ୍ତ ହୋଇଗଲା; ତେଣୁ ତାହା ଏଠାରେ ମିଳେ ନାହିଁ । କିନ୍ତୁ ମ୍ଲେଚ୍ଛମାନଙ୍କର ସେହି ପରମ୍ପରା ମହଜୁଦ ଅଛି । ସେଥିପାଇଁ ତାହା ପ୍ରାମାଣିକ ମାନିବାକୁ ହେବ । ସେ ଏଥିପାଇଁ 'ମେନ' ପ୍ରଭୃତି ଶବ୍ଦର ଉଦାହରଣ ଦିଅନ୍ତି ।

ହିତାଇତ୍ ଜାତି ମେସୋପଟାମିଆରେ ଏହି ସମୟର ପାଖାପାଖି ରହିଥିଲେ—ଯେଉଁ ସମୟରେ ସପ୍ତସିନ୍ଧୁରେ ଆର୍ଯ୍ୟ ଥିଲେ । ନାସତ୍ୟ (ଅଶ୍ୱିନୀକୁମାର), ଇନ୍ଦ୍ର, ବରୁଣ, ମିତ୍ର ଆଦି ଦେବତାମାନଙ୍କୁ ହିତାଇତ୍ ମଧ୍ୟ ପୂଜ୍ୟ ମାନୁଥିଲେ ।

ସିନ୍ଧୁ-ସଂସ୍କୃତି ଅତିରିକ୍ତ ଆଉ ଏକ ଜାତି ସପ୍ତସିନ୍ଧୁର ଆର୍ଯ୍ୟଙ୍କ ସମ୍ପର୍କ ଓ ସଂଘର୍ଷରେ ଆସିଥିଲେ, ଯେଉଁମାନଙ୍କୁ ଋଗ୍‌ବେଦ ଦାସ ଓ ଦସ୍ୟୁ ନାମରେ ମନେ ରଖିଛି, ଯେଉଁମାନେ କି ସେ ସମୟରେ କର, କରାତ, ଅଥବା କଲ୍‌ଡ—ଚଲ୍‌ଡ ନାମରେ ପ୍ରସିଦ୍ଧ

ଥିଲେ ଏବଂ ସେମାନେ ଓ ସେମାନଙ୍କ ଭାଷାର ଅବଶେଷ ଏବେ ମଧ୍ୟ ହିମାଳୟରେ ମିଳେ । ତାହା ମଧ୍ୟ ବୈଦିକ ଆର୍ଯ୍ୟଙ୍କ ଇତିହାସ ଜାଣିବାରେ ସାହାଯ୍ୟକାରୀ । ବିଶେଷତଃ ବୈଦିକ ଦେବତାମାନଙ୍କ ସହିତ ଆର୍ଯ୍ୟମାନଙ୍କର ଯେପରି ସମ୍ବନ୍ଧ ଥିଲା, ଆଜି ମଧ୍ୟ ହିମାଳୟର ଏହିସବୁ ଜାତିଙ୍କ ମଧ୍ୟରେ ତାହା ମହଜୁଦ ରହିଛି । ("ଋଗ୍‌-ବୈଦିକ ଆର୍ଯ୍ୟ" ଦ୍ରଷ୍ଟବ୍ୟ)

---

# ଋଗ୍‌ବୈଦିକ ଆର୍ଯ୍ୟ

ଆର୍ଯ୍ୟମାନେ ଭାରତ ବାହାରୁ ଆସିଥିଲେ । ଆର୍ଯ୍ୟମାନଙ୍କର ରକ୍ତ ସଂପର୍କୀୟ ଇରାନୀମାନେ ଭାଇମାନଙ୍କ ଦେଶକୁ 'ହପ୍ତ-ହିନ୍ଦୁ' ବୋଲି କହୁଥିଲେ । କାରଣ ଇରାନୀମାନେ 'ସ'ର ଉଚ୍ଚାରଣ କରି ପାରୁ ନ ଥିଲେ । 'ସ'କୁ 'ହ' ବୋଲି କହୁଥିଲେ । କ୍ରମେ ଏହି 'ହପ୍ତ-ହିନ୍ଦୁ' 'ହିନ୍ଦ୍' ହେଲା । ପଶ୍ଚିମ ଦେଶରେ ଏହି ସମୟରେ ଗ୍ରୀସର ନିବାସୀ 'ହ'ର ଉଚ୍ଚାରଣ କରିବାରେ ଅସମର୍ଥ ହୋଇ ଏହା ସ୍ଥାନରେ 'ଅ' ଉଚ୍ଚାରଣ କରୁଥିଲେ । ଏହି ଭାବରେ 'ହିନ୍ଦୁ' ଶବ୍ଦ 'ଇନ୍ଦୁ' ଓ ପରେ 'ଇନ୍ଦ' ହୋଇଗଲା ଏବଂ ବହୁ ପରେ ପାଶ୍ଚାତ୍ୟ ଦେଶର ଲୋକେ ଏହାକୁ 'ଇନ୍ଦିଆ' (India) ବୋଲି କହିଲେ ଓ ଭାରତବର୍ଷ ସେଥିଲାଗି ବାହାରେ 'ଇନ୍ଦିଆ' ରୂପେ ପରିଚିତ । ଋଗ୍‌ବେଦରେ 'ସପ୍ତସିନ୍ଧୁ' ଶବ୍ଦ ବହୁ ବାର ବ୍ୟବହୃତ ହୋଇଛି । ଏହା କେଉଁଠି 'ନଦୀ' ଅର୍ଥରେ ଓ କେଉଁଠି ବା ସାତନଦୀ ଅନ୍ତର୍ଗତ ଭୂମି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଅଛି ।

ଭାରତୀୟ ଆର୍ଯ୍ୟମାନେ ହିନ୍ଦ-ୟୁରୋପୀୟ ବଂଶର 'ଶତମ' ଶାଖାର ଅନ୍ତର୍ଗତ । ଏହି 'ଶତମ' ଶାଖାରେ ରୁଷୀୟ ଆଦି ସ୍ଲାଭ ଜାତି ଓ ଇରାନୀ ମଧ୍ୟ ସମ୍ମିଳିତ ଥିଲେ । ଇରାନୀ ଓ ସ୍ଲାଭ ମୂର୍ଦ୍ଧନ୍ୟ ବର୍ଣ୍ଣ ('ଟ' ବର୍ଗ)କୁ ଉଚ୍ଚାରଣ କରିପାରନ୍ତି ନାହିଁ, ଯାହା ଋଗ୍‌ବେଦର ପ୍ରଥମ 'ଋକ୍'ରେ ଅଛି । ଏହି ମୂର୍ଦ୍ଧନ୍ୟ ବର୍ଣ୍ଣର ଉଚ୍ଚାରଣ ମହେଞ୍ଜୋଦାରୋ, ହରପ୍ପାର ଲୋକମାନଙ୍କ ସଂସ୍ପର୍ଶରେ ଆସି ଆର୍ଯ୍ୟମାନେ ଉଚ୍ଚାରଣ କରିପାରିଥିଲେ ।

ଋଗ୍‌ବେଦର ଋଷିମାନଙ୍କର ଉଦ୍ଦେଶ୍ୟ ଇତିହାସ ଲେଖିବା ନ ଥିଲା । ସେମାନେ ନିଜର ଦେବତାମାନଙ୍କୁ ଓ ଦାତାମାନଙ୍କୁ ପ୍ରସନ୍ନ କରିବାକୁ ଚାହୁଁଥିଲେ । ଏହି ଉଦ୍ଦେଶ୍ୟରୁ ଐତିହାସିକ ଓ ଭୌଗୋଳିକ କଥା ସେଥିମଧ୍ୟରେ ଯାହା ସ୍ଥାନ ପାଇଛି । ଋଗ୍‌ବେଦର କାଳ ସମ୍ପର୍କରେ ଋଗ୍‌ବେଦ ସ୍ୱୟଂ ସର୍ବୋପରି ପ୍ରାମାଣ୍ୟ ଗ୍ରନ୍ଥ । ଦିବୋଦାସ ଓ ସୁଦାସ ପିତା-ପୁତ୍ର ଋଗ୍‌ବେଦର ସର୍ବୋପରି ନାୟକ ଅଟନ୍ତି । ସେ ତୃତ୍ସୁ-ଭରତ ଜନର ପ୍ରତାପୀ ରାଜା ଥିଲେ, ଯାହାର ସୀମାରେ ପୁରୁଷ୍ଣୀ ଥିଲା, ବର୍ତ୍ତମାନ ଯେଉଁଠି ରାବୀ ନଦୀ ବହି-ଯାଉଛି ।

---

# ଆର୍ଯ୍ୟ-ଜନ

ଆର୍ଯ୍ୟମାନଙ୍କର ସପ୍ତସିନ୍ଧୁରେ ବସବାସ ଶାନ୍ତିପୂର୍ଣ୍ଣଭାବେ ହୋଇ ନ ଥିଲା । ଏମାନଙ୍କଠାରୁ ଅଧିକ ସଭ୍ୟ ତଥା ନାଗରିକଙ୍କ ସହ ଏମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ଏବଂ ସଂଘର୍ଷ ଖ୍ରୀଷ୍ଟପୂର୍ବ ୧୫୦୦ ପାଖାପାଖି ହୋଇଥିଲା । ହରପପା ଖନନରୁ ଏହିପରି ନିର୍ମମ ହତ୍ୟାକାଣ୍ଡର ପ୍ରମାଣ ମିଳୁଛି, ଯାହାର ଉଲ୍ଲେଖ ଦୁଇଲର ତାଙ୍କ ପୁସ୍ତକ "ଇଣ୍ଡସ୍ ସିଭିଲାଇଜେସନ"ରେ କରିଛନ୍ତି ।

ଋଗ୍‌ବେଦରେ "ଇନ୍ଦ୍ର-ବୃତ୍ର ଯୁଦ୍ଧ" ରୂପରେ ଏହାର କ୍ଷୀଣ ପ୍ରତିଧ୍ୱନି ରହିଛି । ପୁଣି ଏହା ଇନ୍ଦ୍ର-ଶାମ୍ବର ଯୁଦ୍ଧରେ ମଧ୍ୟ ମିଳେ । ଏହି ଯୁଦ୍ଧର ସଫଳତା ପାଇଁ ପ୍ରତ୍ୟେକ ଆର୍ଯ୍ୟ-ଜନ ସେମାନଙ୍କ ନିଜ ନିଜର ଦେବତାଙ୍କୁ ପ୍ରଶଂସା କରିଛନ୍ତି । କିରାତରାଜା ଶମ୍ବର ସହିତ ଦୀର୍ଘ ୪୦ ବର୍ଷ ଯୁଦ୍ଧରେ ଦିବୋଦାସ ବିଜୟୀ ହେବା ଘଟଣା ଋଗ୍‌ବେଦରେ ମିଳେ ଓ ଏହି ବିଜୟ ଲାଗି ପୁରୋହିତବର୍ଗ (ଋଷି) ନିଜର ଆରାଧ୍ୟ ଇନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି ।

ଋଗ୍‌ବେଦ ସମୟରେ ଆର୍ଯ୍ୟମାନଙ୍କର ପାଞ୍ଚଟି ଜନ ମୁଖ୍ୟ ଥିଲା ।

(୧) ପୁରୁ—ଏହି 'ଜନ' ଋଗ୍‌ବେଦ ସମୟରେ ପୁରୁଷ୍ଣୀ (ରାବୀ)ର ପୂର୍ବରେ ରହିଥିଲେ । ଋଗ୍‌ବେଦ ସମୟରେ ଏହାର କୌଣସି ଶାଖା—ଭରତ, ତ୍ରିତ୍ସୁ ଓ କୁଶିକ ନାମରେ ଜଣାଯାଏ । କୁଶିକର ନେତା ବିଶ୍ୱାମିତ୍ର ସୁଦାସଙ୍କର ପରମ ସମର୍ଥକ ଥିଲେ ।

ଭରତର ଗୋଟିଏ ଶାଖା 'ତ୍ରୁତ୍ସୁ' ଥିଲା । ଭରତର ମୁଖିଆ ବଧ୍ର୍ୟଶ୍ୱ, ଦିବୋଦାସ ଓ ସୁଦାସ—ତିନି ଜଣ ପିତାମହ, ପିତା ଓ ପୁତ୍ର ଥିଲେ । ଦିବୋଦାସ-ସୁଦାସଙ୍କୁ ପୁରୁ-ଭରତ ମଧ୍ୟ କୁହାଯାଉଥିଲା, ଆଉ ସେ ତ୍ରୁତ୍ସୁର ମଧ୍ୟ ମୁଖିଆ ଥିଲେ ।

ଭରତ କେବେ ପୁରୁଷ୍ଣୀ (ରାବୀ)ର କୂଳରେ ରହୁଥିଲେ, ଯାହାର ନାମରେ ଆମର ଦେଶ ପ୍ରସିଦ୍ଧ ହେଲା । ପୂରୁମାନଙ୍କୁ ଭରତମାନଙ୍କଦ୍ୱାରା ପରାଜୟରେ ବଶିଷ୍ଠଙ୍କର ମଧ୍ୟ ହାତ ଥିଲା । ସେ କହୁଛନ୍ତି *—ଅଗ୍ନି ଭରତଙ୍କ (ପ୍ରାର୍ଥନା) ଶୁଣିଲେ, ଯୁଦ୍ଧରେ ପୁରୁମାନଙ୍କ ବିରୋଧରେ ଠିଆ ହେଲେ । ଦଶରାଜ୍ଞ ଯୁଦ୍ଧ ବର୍ଣ୍ଣନା ⊕ କରିବାରେ ସେ ପୁଣି ଦୁଷ୍ଟ ବଚନ କହୁବାବାଲା ପୁରୁମାନଙ୍କୁ ଯୁଦ୍ଧରେ ପରାଜିତ କରିବା ପାଇଁ ଇନ୍ଦ୍ରଙ୍କୁ ପ୍ରଶଂସା କରିଛନ୍ତି—

---

* ପ୍ରପ୍ରାୟମଗ୍ନିର୍ଭରତସ୍ୟ ଶୃଣ୍ୱେ ବି
ଯତ୍ସୂର୍ଯୋ ନ ରୌଚତେ ବୃହଦଭଃ ।
ଅଭି ଯଃ ପୂରୁଂ ପୃତ୍ନାସୁ ତସ୍ଥୌ
ଦ୍ୟୁତାନୋ ଦୈବ୍ୟୋ ଅତଥିଃ ଶୁଶୋଚ ॥
—୭।୮।୪

⊕ ବି ସଦ୍ୟୋ ବିଶ୍ୱା ଦୃହିତାନ୍ୟେଷା-
ମିନ୍ଦ୍ରପୁରଃ ସହସା ସପ୍ତ ଦର୍ଦଃ ।
ବ୍ୟାନବସ୍ୟ ତ୍ରୁତ୍ସବେ ଗୟଂ
ଭାଗ୍ଜେଷ୍ମ ପୂରୁଂ ବିଦଥେ ମୃଧ୍ରବାଚଂ ॥
—ବଶିଷ୍ଠ, ୭।୧୮।୧୩

ପୁରୁମାନଙ୍କ ସାଥିରେ ତୃତ୍ସୁମାନଙ୍କର ଏପରି ଖରାପ ସମ୍ବନ୍ଧ ଦିବୋଦାସଙ୍କ ସମୟରେ ନ ଥିଲା । ଦିବୋଦାସଙ୍କ ପୁତ୍ର ପୁରୁକ୍ଷେପ ଋଷିଙ୍କୁ ⊕ ଦିବୋଦାସର ମୂଳ-ଜନର ସମ୍ପର୍କ ଯୋଗୁ ପୁରୁ କୁହାଯାଏ । ପରେ କେଉଁ ଏକ ସମୟରେ ଦିବୋଦାସଙ୍କର ପୁରୁମାନଙ୍କ ସହିତ ଝଗଡ଼ା ହୋଇଗଲା * । ପୁରୁମାନଙ୍କର ତିନି ଜଣ ରାଜାଙ୍କ ନାମ ଋଗ୍‌ବେଦରେ ମିଳେ—ପୁରୁକୁତ୍ସ, ତତ୍ପୁତ୍ର ଅସଦସ୍ୟୁ, ତତ୍ପୁତ୍ର କୁରୁଶ୍ରବଣ । କୁରୁଶ୍ରବଣ ନାମରେ ଏହା ମଧ୍ୟ ଦେଖିବାକୁ ମିଳେ ଯେ, ଭାବୀ କୁରୁ-ବଂଶର ବିକାଶ ପୁରୁମାନଙ୍କଠାରୁ ହୋଇଥିଲା ।

(୨) ଯଦୁ—ଋଗ୍‌ବେଦର ଏହା ଏକ ଏପରି ଜନ ଯେ, ଯାହାର ପରେ ମଧ୍ୟ ସନ୍ଧାନ ମିଳେ । ମଥୁରାର ଯଦୁବଂଶ କୃଷ୍ଣଙ୍କ ଯୋଗୁ ପ୍ରସିଦ୍ଧ ଅଟେ । ଋଗ୍‌ବେଦ କାଳରେ ସେମାନେ ସପ୍ତସିନ୍ଧୁର ପଶ୍ଚିମରେ ଥିଲେ । ପୁରୁମାନେ ତ ଘରର ଶତ୍ରୁ ଥିଲେ । ତା'ପରେ ପିତା-ପୁତ୍ର ଦିବୋଦାସ ଓ ସୁଦାସଙ୍କର ସବୁଠାରୁ ଅଧିକ ସଂଘର୍ଷ ଯଦୁ ଓ ତୁର୍ବଶ ଜନ ସହିତ କରିବାକୁ ହୋଇଥିଲା । ତୁର୍ବଶ ଓ ଯଦୁମାନଙ୍କର ଘନିଷ୍ଠତା ଥିଲା । ବହୁତ ସ୍ଥାନରେ ମଙ୍ଗଳ କାମନା କିମ୍ବା ନାଶ କାମନାରେ ଏହି ଦୁଇଟି ଜନର ନାମ ରହିଛି ।

---

⊕ ଭରଦ୍ଵାଜ ପୁତ୍ରେ ନବନ୍ତମିନ୍ଦ୍ର ପୂରବେଦିବୋଦାସାୟ ମହି
ଦାଶୁଷେ ନୃତୋ ବଜ୍ରେଣ ଦାଶୁଷେ ନୃତଃ ।
ଅତଥିଗ୍ୱାୟ ଶମ୍ବରଂ ଗିରେରୁଗ୍ରୋ ଅବାଭରତ ।
ମହା ଧନାନି ଦୟମାନ ଓଜସା ବିଶ୍ୱା ଧନାନ୍ୟୋଜସା ॥
—୧।୧୩୦

* ଋଗ୍‌ବେଦ—୭।୭।୮

ଅଗସ୍ତ୍ୟ (ବଶିଷ୍ଠଙ୍କ ଭାଇ) ଏକ ସ୍ଥାନରେ * ଏହି ଦୁଇ ଜନଙ୍କ ମଙ୍ଗଳ କାମନା କରି କହିଛନ୍ତି—"ଇନ୍ଦ୍ର, ତୁମେ ତୁର୍ବଶ ଓ ଯଦୁଙ୍କୁ ପାଳନ ଓ ମଙ୍ଗଳକର ।" ସ୍ୱୟଂ ଆଙ୍ଗିରସ ମଧ୍ୟ ** ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଛନ୍ତି—"ଶତକ୍ରତୋ, ତୁମେ ନର୍ଯ, ତୁର୍ବଶ, ଯଦୁଙ୍କୁ ରକ୍ଷା କର, ତୁମେ ତୁର୍ବୀତିଙ୍କୁ ରକ୍ଷା କର ।" କଣ୍ୱଙ୍କ ପୁତ୍ର ବତ୍ସ ମଧ୍ୟ ତୁର୍ବଶ-ଯଦୁଙ୍କ ମଙ୍ଗଳ କାମନା କରିଛନ୍ତି × —"(ମରୁତେ‌ା), କାହିଁକି ନା ତୁମେ ତୁର୍ବଶ-ଯଦୁଙ୍କୁ ଧନେଚ୍ଛୁକ (ମୋର ପିତା) କଣ୍ୱଙ୍କୁ ରକ୍ଷା କର, ଧନପାଇଁ ମୁଁ (ମଧ୍ୟ) ତୁମର ଧ୍ୟାନ କରୁଛି ।" ଯଦୁ ଓ ତୁର୍ବଶମାନଙ୍କ ପୁରୋହିତ କଣ୍ୱ ଓ ଏହାଙ୍କ ପୁତ୍ର ବତ୍ସ ଆଦି ଥିଲେ, ଏଥିପାଇଁ ସେ ନିଜର ଯଜମାନର ଅମଙ୍ଗଳ କାମନା କିପରି

---

* ତ୍ୱଂ ଧୂନିରିନ୍ଦ୍ର ଧୁନିମତୀ ଋଣୋରପଃ
ସୀରା ନ ସ୍ରବନ୍ତୀଃ ।
ପ୍ରଯତ୍ ସମୁଦ୍ରମତିଶୂର ପର୍ଷି ପାରୟା
ତୁର୍ବଶଂ ଯଦୁଂ ସ୍ୱସ୍ତି ॥

—୧।୧୭୪

** ତ୍ୱମାବିଥ ନର୍ଯଂ ତୁର୍ବଶଂ ଯଦୁଂ ତ୍ୱଂ
ତୁର୍ବୀତିଂ ବୟ୍ୟଂ ଶତକ୍ରତୋ ।
ତ୍ୱଂ ରଥମେତଶଂ କୃତ୍ୱ୍ୟେ ଧନେ
ତ୍ୱଂ ପୁରୋ ନବତିଂ ନବ ।୬।

—୧।୫୪

× ଯେନାବ ତୁର୍ବଶଂ ଯଦୁ କଣ୍ୱଂ
ଧନସ୍ପୃତମ୍ ରାୟେ ସୁତସ୍ୟ ଧୀମହି ।୧୮।

—୮।୭

କରିଥାନ୍ତେ ? କିନ୍ତୁ ଏହାର ବିପର୍ଯ୍ୟତରେ ବଶିଷ୍ଠ ଗ୍ରହାନ୍ତି ଯେ *
—"ମଘବନ୍, (ତୁମେ) ଅତିଥିସେବକ (ସୁଦାସ)ର ମଙ୍ଗଳକାରକ,
ତୁମେ ତୁର୍ବଶ ଓ ଯାଦବଙ୍କୁ ପରାଜିତ କର ।"

(ଗ) ତୁର୍ବଶ—ଋଗ୍‌ବେଦରେ ତୁର୍ବଶର ନାମ ବରାବର ଯଦୁ ସହିତ ରହିଛି । ଦୁହିଁଙ୍କ ପୁରୋହିତ କଣ୍ୱ, ତତ୍‌ପୁତ୍ର ବତ୍ସ ଏହାଙ୍କ ବଂଶଜ ଥିଲେ । ଭରତ ଓ ପୁରୁ ଅନାର୍ଯ୍ୟ ଶତ୍ରୁମାନଙ୍କୁ ମୁକାବିଲା କରିଥିଲେ, ଏମାନେ ମଧ୍ୟ ତାହାଙ୍କୁ ପରାଜିତ କରି ପଞ୍ଚଜନର ନାମ କରିଥିଲେ । ଅତ୍ରି (ଋଗ୍‌ବେଦର ୫ମ ମଣ୍ଡଳର ରଚୟିତା) ଓ ଏହାଙ୍କ ବଂଶଜ ସେହି ପୁରୁମାନଙ୍କ ପୁରୋହିତ ଥିଲେ, ଯେଉଁମାନେ ସତ୍‌ଲେଜର ପୂର୍ବରେ ରହୁଥିଲେ । ପରେ ଅବଶ୍ୟ ଆତ୍ରେୟ ଯଦୁ-ତୁର୍ବଶଙ୍କର ମଧ୍ୟ ପ୍ରଶଂସକ ଥିଲେ × ।—"ଇନ୍ଦ୍ର, ତୁମେ ଯଦୁ ଓ ତୁର୍ବଶଙ୍କୁ ଇଚ୍ଛାପୂରକ (ସୁଦୁଘା) ଜଳ (କିମ୍ବା ନଦୀ) ପ୍ରଦାନ କର ।" ଭରତମାନଙ୍କ ପୁରୋହିତ ହେବାରେ ଭରଦ୍ୱାଜ ତୁର୍ବଶଙ୍କର ସଫଳତା ପାଇଁ ଗାନ କରି ନାହାନ୍ତି । ସେ ସୃଂଜୟମାନଙ୍କ ହାତରେ

---

* ଋଗ୍‌ବେଦ—୭।୧୯।୬୮

× ତ୍ୱମପୋ ଯଦବେ ତୁର୍ବଶାୟାରମୟଃ
ସୁଦୁଘାଃ ପାର ଇନ୍ଦ୍ର ।
ଉଗ୍ରମୟାତମବହୋ ହ କୁତ୍ସଂ
ସଂ ହ ଯଦ୍ୱାମୁଶୀନା ରନ୍ତଦେବାଃ ।୮।
—୫।୩୧

ଭୃଙ୍ଗଶମାନଙ୍କର ପରାଜୟର ଉଲ୍ଲେଖ କରିଛନ୍ତି + ।—
"ଏହି (ଇନ୍ଦ୍ର) ସୃଂଜୟଙ୍କ ହାତରେ ଭୃଙ୍ଗଶ ଦେଇଥିଲେ ।"
ଭରଦ୍ୱାଜ ବୃହସ୍ପତିଙ୍କ ପୁତ୍ର ଥିଲେ । ବୃହସ୍ପତିଙ୍କର ଅନ୍ୟ ବଂଶଜ
ଶଂଯୁ ଇନ୍ଦ୍ରଙ୍କ ସ୍ତୁତି କରି ଭୃଙ୍ଗଶ-ଯଦୁଙ୍କ ଗୁଣଗାନ କରିଛନ୍ତି—
"ସେହି ତରୁଣ ଇନ୍ଦ୍ର ଆମର ସଖା ଅଟନ୍ତି, ଯିଏ ଭୃଙ୍ଗଶ ଓ ଯଦୁଙ୍କୁ
ଦୂରରୁ (ପଶ୍ଚିମ) ଭଲଭାବେ ଆଣିଲେ ।" *

ଭୃଙ୍ଗଶ ଓ ଯଦୁ ଭରତଙ୍କର ପ୍ରତିଦ୍ୱନ୍ଦୀ ଥିଲେ, ଯାହାଙ୍କର
ମୁଖିଆ ଦିବୋଦାସ ଓ ସୁଦାସ । ସେଠାରେ ସୃଂଜୟମାନଙ୍କଠାରୁ
ଭୃଙ୍ଗଶମାନଙ୍କର ପରାଜୟରୁ ଜଣାଯାଏ ଯେ ଏମାନେ ଏମାନଙ୍କ
ସ୍ଥାନଠାରୁ ନିକଟରେ ଥିଲେ ।

(୪) ଦ୍ରୁହ୍ୟ—ପଞ୍ଚ ଜନ ମଧ୍ୟରୁ ଏହା ମଧ୍ୟ ଏକ ପ୍ରତାପୀ ଜନ
ଥିଲା । ଏହାର ପୁରୋହିତ ଥିଲେ ଭୃଗୁ । କୁତ୍ସ ଅଂଗିରସଙ୍କର
ଏକ ଋଚ (ଶ୍ଳୋକ) ୫୫ ରେ ଆର୍ଯ୍ୟମାନଙ୍କର ଦୁଇଟି ପ୍ରଧାନ

---

+ ଯସ୍ୟ ଗାବାବରୁଷା ସୂଯବସ୍ୟୂ
ଅନ୍ତରୁଷୂ ଚରତୋ ରେରିହାଣା ।
ସ ସୃଂଜୟାୟ ଭୃଙ୍ଗଶଂ ପରାଦାଦ୍ ବୃଶବତୋ
ଦୈବବାତାୟ ଶିକ୍ଷନ୍ ।୭। —୬।୨୭

* ଯ ଆନୟତ୍ପରାବତଃ ସୁନୀତି ଭୃଙ୍ଗଶଂ ଯଦୁଂ
ଇନ୍ଦ୍ର ସ ନୋ ଯୁବା ସଖା । ୧।-୬।୪୫

୫୫ ଯଦିନ୍ଦ୍ରାଗ୍ନୀ ଯଦୁଷୁ ଭୃଙ୍ଗଶେଷୁ
ଯଦ୍ ଦ୍ରୁହ୍ୟଷ୍ୱନୁଷୁ ପୁରୁଷୁ ସ୍ଥଃ ।
ଅତଃ ପରି ବୃଷଣାବା ହି ଯାତମଥା
ସୋମସ୍ୟ ପିବତଂ ସୁତସ୍ୟ ।୮। —୧।୧୦୮

ଦେବତା—ଇନ୍ଦ୍ର ଓ ଅଗ୍ନିଙ୍କ ମହିମା ଗାନ କରି କହିଛନ୍ତି—"ହେ ଇଚ୍ଛାପୂରକ, ଇନ୍ଦ୍ର-ଅଗ୍ନି, ତୁମେ ଦୁହେଁ ଯଦୁମାନଙ୍କର, ତୁର୍ବଶମାନଙ୍କର, ଦ୍ରୁହ୍ୟୁମାନଙ୍କର, ଅନୁମାନଙ୍କର, ପୁରୁମାନଙ୍କର ହୋଇ ରହିଅଛିଛ. ସେମାନଙ୍କଠାରୁ ଆସି ତିଆରି ହୋଇଥିବା (ଆମର) ସୋମକୁ ପାନ କର ।"

ଯଦୁ, ତୁର୍ବଶ ବ୍ୟତୀତ ପାଖାପାଖି ଦ୍ରୁହ୍ୟୁ ଓ ଅନୁର ଜନପଦ ଥିଲା । ଏହି ପାଞ୍ଚଟି ଜନ ଇନ୍ଦ୍ର ଓ ଅଗ୍ନିଙ୍କର ଭକ୍ତ ଥିଲେ ।

(୪) ଅନୁ—ଏମାନେ ଆର୍ଯ୍ୟଙ୍କର ୫ଟି ପ୍ରଧାନ ଜନ ମଧ୍ୟରେ ଅନ୍ୟତମ ତଥା ଦ୍ରୁହ୍ୟୁମାନଙ୍କର ଯୋଡ଼ିଦାର ଥିଲେ । ଅନୁ କେଡ଼େ ମହତ୍ତ୍ୱଶାଳୀ ଥିଲେ, ଏହା ଆତ୍ରେୟଙ୍କ ଏକ ଋକ୍‌ରୁ ଜଣାଯାଏ * ଓ ଏମାନେ ଇନ୍ଦ୍ରଙ୍କ ରଥର ନିର୍ମାତା ଥିଲେ । ତୁର୍ବଶମାନଙ୍କର ପୁରୋହିତ କଣ୍ୱଙ୍କ ବଂଶଜ ଦେବାତିଥିଙ୍କୁ ତ ନିଜର ଯଜମାନଙ୍କ ଚେରି ଅନୁମାନଙ୍କ ପ୍ରତି ବିଶେଷ ପକ୍ଷପାତ କରିଥିବା ଜଣାଯାଏ ।

---

* ଅନବସ୍ତେ ରଥମଶ୍ୱାୟ ତକ୍ଷନ୍
ତ୍ୱଷ୍ଟା ବଜ୍ରଂ ପୁରୁହୂତ ଦ୍ୟୁମନ୍ତଂ ।
ବ୍ରାହ୍ମାଣଂ ଇନ୍ଦ୍ରଂ ମହୟନ୍ତୋ
ଅର୍କୈରବର୍ଧୟନ୍‌ନହୟେ ହନ୍ତବା ଉ ।୪।
—୫।୩୧

# ଅନାର୍ଯ୍ୟ ଜନ

ଏହି ମୁଖ୍ୟ ପାଞ୍ଚୋଟି ଜନ ବ୍ୟତୀତ ଋଗ୍‌ବେଦରେ ଆଉ କେତେକ ଜନର ଉଲ୍ଲେଖ ମିଳେ । ଏମାନଙ୍କ ମଧ୍ୟରୁ କେତେକ ସିନ୍ଧୁ ଓ ଅସିକ୍ନୀ (ଚେନାବ) ନଦୀ କୂଳରେ ଥିଲେ, ଯେଉଁମାନେ କି ସୁଦାସଙ୍କ ବିରୋଧରେ ଲଢ଼େଇ କରିଥିଲେ । ଏହା ବ୍ୟତୀତ ଅନ୍ୟାନ୍ୟ ଜନ ସିନ୍ଧୁର ପଶ୍ଚିମରେ ରହୁଥିବାର ପ୍ରମାଣ ମିଳେ । ଏମାନଙ୍କ ମଧ୍ୟରୁ ପକ୍ଥର ନାମ ପ୍ରଥମେ ଆସେ ।

ପକ୍ଥ—ସୁଦାସଙ୍କ ମହତ୍ତ୍ୱାକାଙ୍‌କ୍ଷାକୁ ଅସଫଳ କରିବା ପାଇଁ ଯେଉଁ ଦଶ ଜଣ (ଜନ) ରାଜା ଓ ଅନ୍ୟାନ୍ୟ କେତେକ ଆର୍ଯ୍ୟ ଜନ ଖଡ୍‌ଗ ଉଠାଇଥିଲେ, ସେମାନଙ୍କ ମଧ୍ୟରେ ପକ୍ଥ ମଧ୍ୟ ଥିଲେ । ପକ୍ଥ ଜନ ଏବେ ମଧ୍ୟ ପଖ୍ତୁନ (ପଠାଣ) ନାମରେ ସିନ୍ଧୁର ପଶ୍ଚିମରେ କାବୁଲ ପର୍ଯ୍ୟନ୍ତ ବସବାସ କରିଛନ୍ତି, ଯଦ୍ୟପି ଏମାନଙ୍କ ସମ୍ବନ୍ଧରେ ଏହା କୁହାଯାଇ ପାରିବ ନାହିଁ ଯେ ଏମାନେ କେବଳ ପକ୍ଥଙ୍କର ବଂଶଜ । ବର୍ତ୍ତମାନର ପଖ୍ତୁନଙ୍କ ମଧ୍ୟରେ ଅଲିନ୍, ଗାନ୍ଧାରି, ବିଷାଣି ଓ ଭଲାନସ ମଧ୍ୟ ଦେଖାଯାନ୍ତି ।

ପକ୍ଥ ଅଶ୍ୱିଦ୍ୱୟଙ୍କ ଉପାସକ ଆର୍ଯ୍ୟ । କଣ୍ୱପୁତ୍ର ସୋଭରି* ଦେବତାମାନଙ୍କୁ ପ୍ରାର୍ଥନା କରି କହିଛନ୍ତି—"ହେ ଅଶ୍ୱିଦ୍ୱୟ, ଯେଉଁ

---

* ଯାଭିଃ ପକ୍ଥମବଥୋ ଯାଭିରଧ୍ରିଗୁଂ
ଯାଭିର୍ବଭ୍ରୁଂ ବିଜୋଷସଂ ।
ତାଭିର୍ନୋ ମକ୍ଷୂ ତୂୟମଶ୍ୱିନା ଗତଂ
ଭିଷଜ୍ୟତଂ ଯଦାତୁରଂ ।୧୦। —୮।୨୨

'ହେ ଅଶ୍ୱିଦ୍ୱୟ, ଯେଉଁ ରକ୍ଷାରେ ତୁମେ ପକ୍ଥଙ୍କୁ ରକ୍ଷା କରିଛ, ଯେପରି ଅଧ୍ରିଗୁଙ୍କୁ, ଯେପରି ଅସହାୟ ବଭ୍ରୁଙ୍କୁ ରକ୍ଷା କରିଛ, ସେହିପରି ଏମାନଙ୍କ ସହିତ ଶୀଘ୍ର ଆସି ଆତୁର (ବ୍ୟାଧିଗ୍ରସ୍ତ)ଙ୍କର ରକ୍ଷା କର (୧୦।୮।୨୨—ସୋଭରି କଣ୍ୱପୁତ୍ର) ।" ସୁଦାସଙ୍କର ଏହି ବିରୋଧୀମାନଙ୍କର ଉଲ୍ଲେଖ କରି ବଶିଷ୍ଠ କହିଛନ୍ତି—(୧,୮,୯—୭।୧୮ ବଶିଷ୍ଠ*)—"ପକ୍ଥ, ଭଲାନ, ଅଲିନ, ବିଷାଣୀ, ଶିବ ଯେତେବେଳେ ଆସିଲେ, ସେତେବେଳେ ତୃତ୍ସୁମାନଙ୍କ ନେତା ଆର୍ଯ୍ୟଙ୍କ ଗାଁମାନଙ୍କରେ ଯୁଦ୍ଧ କରି ପିଲାମାନଙ୍କୁ ନେଇଆସିଲେ ।

---

* ଆ ପକ୍ଥାସୋ ଭଲାନସୋ ଭନନ୍ତା—
ଲିନାସୋ ବିଷାଣିନଃ ଶିବାସଃ ।
ଅଯୋ ନୟତ୍ସଧମା ଆର୍ଯ୍ୟସ୍ୟ ଗବ୍ୟା
ନୃତ୍ସୁଭ୍ୟୋ ଅଜଗନ୍ୟୁଧାନୃନ୍ ।୧।
ଦୁରାଧ୍ୟୋ ଅଦିତଂ ସ୍ରେବୟନ୍ତୋ
ଚେତସୋ ବି ଜଗୃଭ୍ରେ ପୁରୁଷ୍ଣୀଂ ।
ମହ୍ନା ବିବ୍ୟକ୍ ପୃଥ୍ୱୀଂ ପତ୍ୟମାନଃ
ପଶୁଷ୍କବିରଶୟଚ୍ଚାୟମାନଃ ।୮।
ଇୟୁରର୍ଥ ନ ନ୍ୟର୍ଥ ପରୁଷ୍ଣୀ-
ମାଶୁଶ୍ଚନେଦଭିପିତ୍ୱଂ ଜଗାମ ।
ସୁଦାସ ଇନ୍ଦ୍ରଃ ସୁତୁକାଂ ଅମିତ୍ରା—
ନରନ୍ଧୟନ୍ମାନୁଷେ ବଧ୍ରିବାଚଃ ।୯।
(ବଶିଷ୍ଠ—୭।୧୮)

ସୁଦାସଙ୍କ ପାଇଁ ଇନ୍ଦ୍ର ମନୁଷ୍ୟମାନଙ୍କ ମଧ୍ୟରେ ବହୁ ସନ୍ତ୍ରାମୀ ଶତ୍ରୁମାନଙ୍କୁ ମାରିଲେ ଇତ୍ୟାଦି ।

ଉପରୋକ୍ତ ଋକ୍‌ରେ ଦଶରାଜ୍ଞ ଯୁଦ୍ଧର ଜଣେ ପ୍ରମୁଖ ନେତା ବଶିଷ୍ଠ ପକ୍‌ଥମାନଙ୍କ ସହିତ ଭଲାନ, ଅଳିନ, ବିଷାଣୀଙ୍କ ନାମ ମଧ୍ୟ କହିଛନ୍ତି । ତେଣୁ ଏମାନେ ପକ୍‌ଥଙ୍କର ପଡ଼ୋଶୀ ଜନ ହେବେ ।

ଶିବ—ଏହି ଜନ ଶିବ ଦେଶରେ ଜନ ଥିଲେ, ଯେଉଁମାନେ ସିନ୍ଧୁର ଏପାଖର ଝେଲମ (ବିତସ୍ତା)ର ପଶ୍ଚିମରେ ରହୁଥିଲେ । ଏହି ନାମ ଥିବା ଏକ ଅଭିଲେଖ ଶୋରକୋଟରେ ମିଳିଛି । ସୁଦାସଙ୍କ ପ୍ରତିଦ୍ୱନ୍ଦ୍ୱୀ ଏହି ଦଶ-ରାଜା ମିଶି ଲଢ଼ୁଥିଲେ, ଯେଉଁଥିପାଇଁ ଏହି ଯୁଦ୍ଧ ଦଶ-ରାଜାଙ୍କ ଯୁଦ୍ଧ (ଦଶରାଜ୍ଞ ଯୁଦ୍ଧ) ନାମରେ ଋଗ୍‌ବେଦ ଓ ତା' ପରବର୍ତ୍ତୀ ଗ୍ରନ୍ଥରେ ପ୍ରସିଦ୍ଧ ହୋଇଛି ।

ଏମାନଙ୍କ ଅତିରିକ୍ତ ସୁଦାସଙ୍କ ଶତ୍ରୁମାନଙ୍କ ମଧ୍ୟରେ ନିମ୍ନ-ଲିଖିତ ଜନ କିମ୍ବା ବ୍ୟକ୍ତିମାନଙ୍କ ନାମ ମଧ୍ୟ ଋଗ୍‌ବେଦରେ ଉଲ୍ଲେଖ ରହିଛି ।

କ୍ରିମ୍ୟୁ (ଜନ), ଶିବ (ଜନ), ମତ୍ସ୍ୟ (ଜନ), ବୈକର୍ଣ୍ଣ (ବ୍ୟକ୍ତି ?) କବଷ, ଦେବକ ମନ୍ୟମାନ, ଋଯୁମାନ କବ, ସୁତୁକ, ଉଚଥ, ଶ୍ରୁତ, ବୃଦ୍ଧ, ମନ୍ୟୁ, ପୃଥୁ (ଏମାନେ ସମସ୍ତେ ବ୍ୟକ୍ତି) । ସବୁଠାରୁ ବଳବାନ ଜନ ଥିଲା ଭରତ, ଯେଉଁମାନେ ପୁରାତନ ପୁରୁର ଏକ ଶାଖା ଥିଲେ ।

ଏହିସବୁ ଆର୍ଯ୍ୟ ଜନଗୁଡ଼ିକ ମଧ୍ୟରେ ୫ଟି ଜନ ଅତି ପୁରୁଣା । ଏହି ୫ଟି ମଧ୍ୟ ଗୋଟିଏ ସ୍ଥାନର ସ୍ଥାୟୀ ନିବାସୀ ନ ଥିଲେ । ଶମ୍ବୁ

ବାର୍ହସ୍ପତ୍ୟଙ୍କର * କଥନରୁ ଜଣାଯାଏ ଯେ—ଇନ୍ଦ୍ର, ଏମାନଙ୍କ ସ୍ତୁତିର ପଞ୍ଚମନ୍ତ୍ର ଆଣିଥିଲେ ।

ଅଥର୍ବବେଦ ଋଗ୍‌ବେଦ (ପ୍ରାୟ ଖ୍ରୀଷ୍ଟପୂର୍ବ ସାତ ଶହ— ଆଠ ଶହ ବର୍ଷ) ପରେ ରଚିତ ।

ଅଥର୍ବବେଦ ବେଳକୁ ଆର୍ଯ୍ୟମାନେ ଅଙ୍ଗ ଓ ମଗଧ ପର୍ଯ୍ୟନ୍ତ ଅର୍ଥାତ୍ ଓ ବଙ୍ଗ ସୀମା ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲେ । ଋଗ୍‌ବେଦରେ ଉଲ୍ଲେଖ ଥିବା ଦେଶରେ ସେମାନେ ସପ୍ତ ସିନ୍ଧୁ ପର୍ଯ୍ୟନ୍ତ ରହିଥିଲେ । ଏହିଠାରେ ସେମାନେ ନିଜ ଜନରେ ସ୍ୱତନ୍ତ୍ର ପଶୁ-ପାଳକ ଜୀବନ ବିତାଉଥିଲେ + ।

---

* ଇମା ରୁଦ୍ରାୟ ସ୍ଥିରଧନ୍ୱନେ ଗିରଃ
କ୍ଷିପ୍ରେଷବେ ଦେବାୟ ସ୍ୱଧାନ୍ୱେ ।
ଅଷାଢ଼ାୟ ସହମାନାୟ ବେଧସେ
ତିଗ୍ମାୟୁଧାୟ ଭରତା ଶୃଣୋତୁ ନଃ ।୧।
—୭।୪୬

+ ସବିଶେଷ ଜାଣିବା ଲାଗି ମହାପଣ୍ଡିତ ରାହୁଲ ସାଙ୍କୃତ୍ୟାୟନଙ୍କ "ଋଗ୍‌ବୈଦିକ ଆର୍ଯ୍ୟ" ଦ୍ରଷ୍ଟବ୍ୟ ।

# ଋଗ୍‌ବୈଦିକ ଆର୍ଯ୍ୟଯୁଗରେ ଜାତି

ଋଗ୍‌ବୈଦିକ ଆର୍ଯ୍ୟ-କାଳ (ଖ୍ରୀଷ୍ଟପୂର୍ବ ୧୨୦୦–୧୦୦୦)ରେ ଭାରତରେ ଏକ୍ରେଟି ଜାତିର ବସତି ମୁଖ୍ୟତଃ ଥିବାର ଜଣାଯାଏ । ସପ୍ତ ସିନ୍ଧୁର ବହୁ ଦୂରରେ ରହୁଥିବାରୁ ଏମାନଙ୍କ ସହିତ ଆର୍ଯ୍ୟମାନଙ୍କର କୌଣସି ସମ୍ବନ୍ଧ ନ ଥିଲା । ସେହି ଆର୍ଯ୍ୟେତର ଜାତିମାନଙ୍କ ମଧ୍ୟରେ ଥିଲେ କୋଲ ବା କୋଲାରୀ (ନିଷାଦ, ଅଷ୍ଟ୍ରିକ) । ଆର୍ଯ୍ୟଙ୍କ ଘନିଷ୍ଠ ସମ୍ପର୍କ ଓ ସଂଘର୍ଷରେ ଆସିଥିବା ଜାତି ହେଉଛନ୍ତି—ମହେଞ୍ଜୋଦାରୋ ଓ ହରପ୍ପାରେ ଥିବା ସଭ୍ୟ ଜାତି—ଦ୍ରାବିଡ଼ ଏବଂ କାଶ୍ମୀରଠାରୁ ଆସାମ ଓ ଆହୁରି ଆଗକୁ ପାହାଡ଼ ତଥା ତରାଇରେ ରହୁଥିବା ଜାତି କିର୍ ବା କିରାତ (ମୋନ୍-ଖ୍ମେର) ।

ଋଗ୍‌ବେଦରେ ଦ୍ରାବିଡ଼ ଓ କିରାତଙ୍କୁ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇ ନାହିଁ । ଦୁହିଁଙ୍କୁ କୃଷ୍ଣଚର୍ମ, କୃଷ୍ଣଯୋନି ବା କୃଷ୍ଣ-ବର୍ଣ୍ଣ ରୂପେ ବର୍ଣ୍ଣନା କରାଯାଇଛି । ଯଦିଓ କିରାତମାନେ କଳା ନୁହନ୍ତି, ତଥାପି ପାଣ୍ଡୁ ବର୍ଣ୍ଣ ମଙ୍ଗୋଲେଏଡ଼ ଥିଲେ । ଏମାନଙ୍କ ଚେହେରା ଦ୍ରାବିଡ଼ମାନଙ୍କଠାରୁ ଭିନ୍ନ ଦେଖାଯାଏ । ଆଜି ମଧ୍ୟ ତିବ୍ବତୀ ଓ ମୁଣ୍ଡା ମନୁଷ୍ୟଙ୍କ ଚେହେରା ଦେଖିଲେ ଏହି ଭେଦ ସ୍ପଷ୍ଟ ଜଣାଯାଏ । ଅନ୍ୟମାନେ ଦୁହିଁଙ୍କୁ କୃଷ୍ଣ, ଦସ୍ୟୁ ବା ଦାସ କହିଛନ୍ତି ।

ବିଶ୍ୱାମିତ୍ର ଆର୍ଯ୍ୟମାନଙ୍କ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ବିଷୟରେ କହିଛନ୍ତି—"ଘୃଷ୍ଟିମାନ୍ ତେଜରେ କୃଷ୍ଣଙ୍କୁ (କଳାମାନଙ୍କୁ) ନଷ୍ଟ କର··· ।" *

---

* ଅଦେଦିଷ୍ଟ ବୃତ୍ରହା ଗୋପତିର୍ଗା
ଅନ୍ତଃ କୃଷ୍ଣାଂ ଅରୁଷୈର୍ଦ୍ଧାମଭିର୍ଗାତ
ପ୍ର ସୂନୃତାଃ ଦିଶମାନନୃତେନ ଦୁରଶ୍ଚ
ବିଶ୍ୱା ଅବୃଣୋଦପ ସ୍ୱାଃ ।୨୧।

—୩।୩୧

# ଶ୍ରେଣୀ

ପରାଜିତ ଶତ୍ରୁ ସ୍ତ୍ରୀ-ପୁରୁଷଙ୍କୁ ବିଜେତା ଦାସ-ଦାସୀ ରୂପେ କାମ କରାଉଥିଲେ । ଏହିପରି ଦାସ-ପ୍ରଥା ସବୁ ଦେଶରେ ଦେଖାଯାଏ । ଆମ ଦେଶରେ ଦାସ-ପ୍ରଥାର ଶେଷ ହେଲା ୧୯ଶ ଶତାବ୍ଦୀର ଦ୍ୱିତୀୟ ପାଦରେ । ଋଗ୍‌ବୈଦିକ ସମୟରେ, ଯେତେବେଳେ ବିଜେତା ଓ ବିଜିତଙ୍କ ରୂପ-ରଙ୍ଗ ଓ ସ୍ୱାର୍ଥରେ ଖୁବ୍ ଭେଦ ଥିଲା, ଦାହ-ପ୍ରଥା ମଧ୍ୟ ଖୁବ କ୍ରୂର ହୋଇଥିବା ସ୍ୱାଭାବିକ । ବାଲଖିଲ୍ୟ ସୂକ୍ତ *ରେ ପୃଷଧ୍ର ଋଷି ଇନ୍ଦ୍ରଙ୍କୁ ପ୍ରାର୍ଥନା କରି କହିଛନ୍ତି— "ମୋତେ ଶହେ ଗଧ, ଶହେ ମେଣ୍ଢା ଓ ଶହେ ଦାସ ଦିଅ ।" କଣ୍ୱପୁତ୍ର ଋଷି ସୋଭରିଙ୍କୁ ପୁରୁକୁତ୍ସ-ପୁତ୍ର ରାଜା ସେମାନଙ୍କ ଦସ୍ୟୁମାନଙ୍କ ମଧ୍ୟରୁ ପଚାଶ ବଧୂଙ୍କୁ ଦେଇଥିଲେ । ଏଠାରେ ବଧୂ ଦାସୀ ଅର୍ଥରେ ପ୍ରଯୁକ୍ତ † ।

---

* ଶତଂ ମେ ଗର୍ଦ୍ଦଭାନାଂ ଶତମୂର୍ଣ୍ଣାବତୀନାଂ ।
ଶତଂ ଦାସାଂ ଅତିସ୍ରଜଃ ।୩।

—ବାଲଖିଲ୍ୟ—୮।୮

† କ ଅଦାନ୍ମେ ପୌରୁକୁତ୍ସ୍ୟଃ
ପଂଚଶତଂ ତ୍ରସଦସ୍ୟୁର୍ବଧୂନାଂ ।
ମଂହିଷ୍ଠୋ ଅର୍ଯଃ ସତ୍ପତିଃ ।୩୬।
ଉତ ମେ ପ୍ରୟିୟୋର୍ବୟିୟୋଃ
ସୁବାସ୍ତ୍ୱା ଅଧି ତୁଗ୍ୱନି ।
ତିସୃଣାଂ ସପ୍ତତୀନାଂ ଶ୍ୟାବଃ
ପ୍ରଣେତା ଭୁବଦ୍ୱସୁର୍ଦିୟାନାଂ ପତିଃ ।୩୭। —୮।୧୯

ଏହି ବିଜେତା ଓ ଜେତାମାନଙ୍କ ସମ୍ବନ୍ଧର ପରେ ଶ୍ରେଣୀ-ଭେଦର ସୃଷ୍ଟି ହେଲା ଓ ଦାସ-ପ୍ରଥାର ସୃଷ୍ଟି ହେଲା । ଏହାର ଉଦାହରଣ ଋଗ୍‌ବେଦରେ ସ୍ଥଳେ ସ୍ଥଳେ ପ୍ରତିଫଳିତ ହୋଇଛି ।

# ଖାଦ୍ୟ

ଋଗବୈଦିକ ଆର୍ଯ୍ୟ କୃଷି ମଧ୍ୟ କରୁଥିଲେ । କିନ୍ତୁ ସେମାନଙ୍କର ସବୁଠାରୁ ବଡ଼ ଧନ ଥିଲା—ଗୋରୁ, ଅଶ୍ୱ, ଛେଳି, ମେଣ୍ଢା ଇତ୍ୟାଦି । ବଡ଼ ବଡ଼ ଋଷିମାନଙ୍କର ଆତିଥ୍ୟ ଲାଗି ମାଂସ ଅତ୍ୟାବଶ୍ୟକ ଜିନିଷ ଥିଲା ।

ପରେ ଧର୍ମ-ସୂତ୍ରକାରମାନେ କହିଛନ୍ତି—ନାମାଂସୋ ମଧୁପର୍କୋ ଭବତି (ଅଶ୍ୱଳାୟନ ଗୃହ୍ୟସୂତ୍ର ୧।୨୪) । ବିନା ମାଂସରେ ମଧୁପର୍କ ହୁଏ ନାହିଁ । ଅତିଥିଙ୍କ ସତ୍କାର ଲାଗି ଯେଉଁ ଖାଦ୍ୟ ପ୍ରସ୍ତୁତ ହେଉଥିଲା, ତାହାକୁ ମଧୁପର୍କ କୁହାଯାଉଥିଲା । ଋଗ୍‌ବେଦ ପରେ ବ୍ରାହ୍ମଣ କାଳ (ଖ୍ରୀ: ପୂ: ୮୦୦)ରେ ମଧ୍ୟ ମାଂସ ଆର୍ଯ୍ୟଙ୍କର ପ୍ରଧାନ ଭୋଜନ ଥିଲା । ବୃହଦାରଣ୍ୟକ*ରେ କୁହାଯାଇଛି ଯେ, "ଯଦି କେହି ଇଚ୍ଛାକରେ ଯେ ମୋ ପୁଅ

---

* "ଯ ଇଚ୍ଛେତ୍ ପୁତ୍ରୋ ମେ ପଣ୍ଡିତୋ
ବିଗୀତଃ ସମିତିଂଗମଃ ଶୁଶ୍ରୂଷିତାଂ
ବାଚଂ ଭାଷିତା ଜାୟେତେ, ସର୍ବାନ
ବେଦାଂ ଅନୁବ୍ରବୀତ, ସର୍ବମାୟୁରିୟାଦିତି,
ମାଂସୋଦନଂ ପାଚୟିତ୍ୱା ସର୍ପିଷ୍ମନ୍ତଂ
ଅଶ୍ନୀୟାତାମ୍ ଈଶ୍ୱରୌ ଜନୟିତବୈ
ଔକ୍ଷେଣ ବାଽର୍ଷଭେଣ ବା ।"

—ବୃହଦାରଣ୍ୟକ—୬।୪।୧୮

ପଣ୍ଡିତ, ପ୍ରସିଦ୍ଧ, ସଭ୍ୟ-ସମାଜବାଲା ହେଉ ଓ ଏପରି କଥା କହିବ, ଯାହାକୁ ଲୋକେ ଶୁଣିବାକୁ ଚାହୁଁଥିବେ, ତଥା ସେ ପୂର୍ଣ୍ଣ ବେଦକୁ ପଢ଼ି, ପୂର୍ଣ୍ଣ ଆୟୁ ପ୍ରାପ୍ତ ହେବ, ତେବେ ମା'ମାନଙ୍କ ପକ୍ଷରେ ଉଚିତ ଯେ, ଘିଅ ସହିତ ଷଣ୍ଢ କିମ୍ବା ବଳଦ ମାଂସ ପେଟପୂର୍ଣ୍ଣ କରି ଖୁଆଇବା ।"

ଏହି ସମୟରେ ଘୋଡ଼ା ମାଂସ ମଧ୍ୟ ଭକ୍ଷ୍ୟ ଥିଲା । ଏହାର ପକ୍ୱସିଦ୍ଧ ମାଂସକୁ ଆର୍ଯ୍ୟଜନ ବହୁତ ଆଗ୍ରହରେ ଖାଉ-ଥିଲେ । ଦୀର୍ଘତମା ଋଷି ଏ ସମ୍ପର୍କରେ କହିଛନ୍ତି ଯେ * ଯେଉଁ ଘୋଡ଼ା ଖୁବ୍ ଭଲ ଦେଖିବାକୁ, ଯିଏ ଘୋଡ଼ାର ମାଂସ ଭୋଜନ କରୁଥିବ, ତାହାର ସଂକଳ୍ପ ଆମର ସହାୟକ ହେବ ।"

ଗୋରସ ମଧ୍ୟ ଏମାନଙ୍କର ଖାଦ୍ୟସାମଗ୍ରୀ ମଧ୍ୟରେ ପ୍ରଧାନ ଥିଲା । ଘୃତ ତ ମୁଖ୍ୟ ଥିଲା । ତା ଛଡ଼ା ଋଗ୍‌ବେଦରେ କେଉଁଠି ହେଲେ ଭାତ ବା ଗହମର ଉଲ୍ଲେଖ ନାହିଁ, କେବଳ ଯବର ନାମ ଉଲ୍ଲେଖ ରହିଛି । ଦହି ଓ ଦୁଧ ମିଶ୍ରିତ ଖାଦ୍ୟ ଋଗ୍‌ବେଦର ବହୁ ସ୍ଥାନରେ ଉଲ୍ଲେଖ ରହିଛି । ପଶୁପାଳନର ପ୍ରଧାନତା ଥିବା ଆର୍ଯ୍ୟଙ୍କ ଭୋଜନରେ ମାଂସ ଓ ଗୋରସର ପ୍ରାଧାନ୍ୟ ଥିଲା । ମାଂସରେ ମସଲାର ବ୍ୟବହାର ବହୁତ ପରେ ହେଲା ।

---

* ଯେ ବାଜିନଂ ପରିପଶ୍ୟନ୍ତି ପକ୍ୱଂ ଯ
ଈମାହୁଃ ସୁରଭି ର୍ନିହରେତି ।
ଯେ ଚାର୍ବତୋ ମାଂସଭିକ୍ଷାମୁପାସତ ଉତୋ
ତେଷାମଭିଗୂର୍ତ୍ତି ର୍ନ ଇନ୍ୱତୁ ॥୧୨॥
—ଦୀର୍ଘତମାଋଚ୍ୟଥ ସୂକ୍ତ ୧।୧୬୨

ଅନ୍ନର ଅର୍ଥ ପୂର୍ବକାଳରେ ଭୋଜନ ଥିଲା । କିନ୍ତୁ ପରେ ଧାନର ପ୍ରଚୁରତା ଯୋଗୁଁ ଅନ୍ନ ଧାନରୁ ପ୍ରସ୍ତୁତ ମୁଖ୍ୟ ଖାଦ୍ୟ ଅର୍ଥରେ ପ୍ରଯୁକ୍ତ ହେଲା ।

ଆର୍ଯ୍ୟ କୃଷି ମଧ୍ୟ କରୁଥିଲେ । ଏହା କୃଷୀବଳ * ଶବ୍ଦ (କିଷାନ)ରୁ ଜଣାଯାଏ (୧୦।୧୧୭।୭) ।

ଏହି କୃଷିରେ ଯବର ପ୍ରାଧାନ୍ୟ ଥିଲା । କାଠ ଲଙ୍ଗଳର ବ୍ୟବହାର ଥିଲା । ବଳଦ ଯୋଚା ହେଉଥିଲେ । ଜମିରେ ଜଳ ଯୋଗାଣ ଲାଗି ଶ୍ରେଷ୍ଠ ନାଳ ବ୍ୟବସ୍ଥା ଥିଲା, ଯାହାକୁ 'କୁଲ୍ୟା' କୁହାଯାଇଛି ।

---

* ଆଂଜନଗଂଧିଂ ସୁରଭିଂ ବହ୍ୱନ୍ନାମକୃଷୀବଲାଂ
ପ୍ରାହଂ ମୃଗାଣାଂ ମାତରମରଣ୍ୟାନି ମଶଂସିଷଂ ॥୬॥
(ବେଦମନ୍ତ୍ର ଇରମ୍ମଦ-ପୃଷ୍ଠ-୧୦।୧୪୬)

# ସୋମ

ଆର୍ଯ୍ୟଙ୍କର ସବୁଠାରୁ ପ୍ରିୟ ପେୟ ହେଉଛି ସୋମ । ଋଷି-ମାନଙ୍କର ଏହା ଦ୍ରବ୍ୟ ଓ ପ୍ରିୟ ବସ୍ତୁ ଥିଲା । ଋଷି ମଧୁଚ୍ଛନ୍ଦା କହିଛନ୍ତି *—

ସୋମ ଘଣ୍ଟାକୁ ଘଣ୍ଟା ତିଆରି ହେଉଥିଲା—"ସୋମଃ ଚମୂଷୁ" (୯।୨୦।୬) । ସନ୍ଧ୍ୟାରେ ନୃତ୍ୟ ଉପଭୋଗ ବେଳେ ଏବଂ ସ୍ୱଚ୍ଛନ୍ଦ ଓ ସୁଖୀ ଆର୍ଯ୍ୟଜୀବନର ଏହା ଏକ ଅଭିନ୍ନ ଅଙ୍ଗ ଥିଲା । ଏହି ସୋମ ହେଉଛି ଭାଙ୍ଗ । ଏବେ ମଧ ଓଡ଼ିଶାରେ ଭାଙ୍ଗକୁ 'ସୋମରାଜ' କୁହାଯାଏ । ସୋମରେ ଦୁଧ ଓ ମଧୁ ମିଶାଇ ସୋମରସ ତିଆରି ହେଉଥିଲା ।

---

* ସ୍ୱାଦିଷ୍ଠୟା ମଦିଷ୍ଠୟା ପାବସ୍ୱ ସୋମ ଧାରୟା ।
ଇନ୍ଦ୍ରାୟ ପାତବେ ସୁତଃ । ॥୧॥
—ଧୂଚ୍ଛନ୍ଦା ବିଶ୍ୱାମିତ୍ର-ପୁତ୍ର ୯।୧
["ଇନ୍ଦ୍ରଙ୍କ ପିଇବା ପାଇଁ ଛଣା ଯାଇଥିବା ସୋମ,
ତୁମେ ସ୍ୱାଦିଷ୍ଟ ଓ ମଦିଷ୍ଟ
(ଅତ୍ୟନ୍ତ ନିଶାଯୁକ୍ତ) ଧାରାରେ କ୍ଷରିତ ହୁଅ ।"]

# ସୁରା

ଅର୍ଯ୍ୟମାନେ ସୁରା ମଧ୍ୟ ପିଉଥିଲେ । କିନ୍ତୁ ସେମାନେ ଏହାକୁ ସୁପାନ ରୂପେ ଗ୍ରହଣ କରୁ ନ ଥିଲେ ।

ସପ୍ତସିନ୍ଧୁ ସୋମଭକ୍ତ ଆର୍ଯ୍ୟ ସୁରାକୁ ହୀନ ଦୃଷ୍ଟିରେ ଦେଖୁଥିଲେ । ଏ ସମ୍ପର୍କରେ ମେଧାତିଥି କଣ୍ୱଙ୍କ ଉକ୍ତିରୁ ସ୍ପଷ୍ଟ ଜଣାଯାଏ * ।

ବଶିଷ୍ଠ ମଧ୍ୟ ସୁରାକୁ ନାପସନ୍ଦ କରିଛନ୍ତି + । "ହେ ବରୁଣ, ସେ ଦୋଷ ଆପଣଙ୍କ ନ ହେଉ, ସେ ସୁରା, କ୍ରୋଧ, ଜୁଆ, ଅଜ୍ଞାନ ଅଟେ । ଯାହା ବଡ଼ ଶ୍ରେଷ୍ଠଙ୍କୁ ପଥଭ୍ରଷ୍ଟ କରେ···।"

---

* ହୃତ୍ସୁ ପୀତାସୋ ଯୁଧ୍ୟନ୍ତେ ଦୁର୍ମଦାସୋ ନ ସୁରାୟାଂ
ଊଧର୍ନ ନଗ୍ନା ଜରନ୍ତେ ॥୧୨॥
(ମେଧାତିଥି କଣ୍ୱପୁତ୍ର-୮।୨)

\+ ନ ସଃ ସ୍ୱୋ ଦକ୍ଷୋ ବରୁଣ ଧ୍ରୁତିଃ ସା ସୁରା
ମନ୍ୟୁର୍ବିଭିଦକୋ ଅଚିତ୍ତିଃ ।
ଅସ୍ତି ଜ୍ୟାୟାନ୍ କନୀୟସ ଉପାରେ
ସ୍ୱପ୍ନଶ୍ଚନେଦ ନୃତସ୍ୟ ପ୍ରୟୋତା ॥୬॥
(ବଶିଷ୍ଠ-୭।୮୬)

କିନ୍ତୁ ସୁରା ଯେ ଅନେକଙ୍କର ପ୍ରିୟ ଥିଲା ତାହା ମଧ୍ୟ ଏଥିରୁ ଜଣାଯାଏ *—ଭୋଜଦାତା ସୁରା ପାଉଥିଲେ—ଇତ୍ୟାଦି ।

---

* ଭୋଜା ଜିଗ୍ୟୁଃ ସୁରଭିଂ ଯୋନିମଗ୍ରେ
ଭୋଜା ଜିଗ୍ୟୁର୍ବଧ୍ୱଂ ଯା ସବାସାଃ ।
ଭୋଜା ଜିଗ୍ୟୁରନ୍ତଃ ପେୟଂ ସୁରାୟାଃ
ଭୋଜା ଜିଗ୍ୟୁର୍ୟେ ଅହୂତା ପ୍ରଯନ୍ତି ॥୯॥

—ଦିବ୍ୟା ଅଂଗିରସ, ୧୦।୧୦୭

# ରାଜନୀତି

ଋଗ୍‌ବେଦରେ ଉଲ୍ଲେଖ ଥିବା ତିନି ଶତାଧିକ ଋଷିଙ୍କ ମଧ୍ୟରୁ ବାମଦେବ, ବିଶ୍ୱାମିତ୍ର, ଭରଦ୍ୱାଜ ଓ ବଶିଷ୍ଠ ଋଗ୍‌ବେଦର ସବୁଠାରୁ ଅଧିକ ମନ୍ତ୍ରର ରଚୟିତା । ଅଧିକ ମନ୍ତ୍ରର ରଚୟିତା ଓ ଐତିହାସିକ ମହତ୍ତ୍ୱପୂର୍ଣ୍ଣ ଘଟଣାର ଉଲ୍ଲେଖ କରିବାରେ ଭରଦ୍ୱାଜ, ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କର ସବୁଠାରୁ ଅଧିକ ଅବଦାନ ରହିଛି ।

ଋଗ୍‌ବେଦର ଋଷି ସପ୍ତସିନ୍ଧୁର ଋଷି ଥିଲେ । ଏହି ସମୟରେ ଆର୍ଯ୍ୟଙ୍କ ନିବାସ ଓ ପ୍ରଭୁତା କ୍ଷେତ୍ର ସପ୍ତସିନ୍ଧୁ ଅର୍ଥାତ୍ ସରସ୍ୱତୀଠାରୁ ଆରମ୍ଭ କରି ସିନ୍ଧୁ ଉପତ୍ୟକା ପର୍ଯ୍ୟନ୍ତ ଥିଲା । ଋଗ୍‌ବେଦର ରଚନାର ତିନି ଶତ ବର୍ଷ ପରେ ଯଜୁର୍ବେଦ, ଅଥର୍ବବେଦ, ଐତରେୟ, ଶତପଥ ବ୍ରାହ୍ମଣ ପ୍ରଭୃତି ରଚିତ ହୋଇଥିଲା । ଏତେବେଳକୁ ଆର୍ଯ୍ୟମାନେ କୁରୁ-ପାଞ୍ଚାଳ ପର୍ଯ୍ୟନ୍ତ ଆସି ଯାଇଥିଲେ ଓ ସେମାନଙ୍କ ପ୍ରଭାବ ବିଦେହ (ଉତ୍ତର ବିହାର) ପର୍ଯ୍ୟନ୍ତ ଓ ଦକ୍ଷିଣରେ ଭୋଜ (ମଧ୍ୟ ନର୍ମଦା ଉପତ୍ୟକା) ପର୍ଯ୍ୟନ୍ତ ବିସ୍ତୃତ ଲାଭ କରିଥିଲା । 'ବ୍ରାହ୍ମଣ'ରେ କୁରୁ-ପାଞ୍ଚାଳଠାରେ ସମୃଦ୍ଧ ଜନପଦ ଓ ରାଜ୍ୟର ବିବରଣୀ ଦେଖିବାକୁ ମିଳେ । ଏହି ସମୟରେ ମଧ୍ୟ ଉପନିଷଦ ରୂପରେ ଆର୍ଯ୍ୟ-ବିଚାରଧାରା ଓ ଜନସମ୍ପର୍କୀୟ ବହୁ ତଥ୍ୟ ମିଳେ ।

ଋଗ୍‌ବେଦର ରାଜନୈତିକ ଜୀବନ ଲକ୍ଷ୍ୟ କଲେ ଜଣାଯାଏ ଯେ ବିଭିନ୍ନ ଋକ୍‌ରେ ଯେଉଁ ଯଜମାନଙ୍କ ସନ୍ଦର୍ଭରେ ଉଲ୍ଲେଖ ରହିଛି ସେଥିରେ ଋଗ୍‌ବେଦର ଋଷିମାନେ ଜନ-ମୁଖ୍ୟଙ୍କର

କେବଳ ପୁରୋହିତ ନ ଥିଲେ, ସେମାନଙ୍କର ପରାମର୍ଶଦାତା, ଏପରି-
କି ସେନାନାୟକ ଓ ପ୍ରଧାନମନ୍ତ୍ରୀର ଭୂମିକା ମଧ୍ୟ ଗ୍ରହଣ କରୁଥିଲେ
ଏବଂ ବଂଶଜଙ୍କୁ ମଧ୍ୟ ତଲୱାର ଓ ଧନୁର୍ବାଣ ଦେଇ ନିଜ ନିଜ-
ଜନ-ମୁଖ୍ୟଙ୍କ ସଫଳତାରେ ସହାୟତା କରୁଥିଲେ ।

---

# ଭରଦ୍ୱାଜଙ୍କ ଋକ୍‌ରେ ଇତିହାସ

ଏହାଙ୍କର ବହୁ ଋକ୍‌ରେ ଦିବୋଦାସଙ୍କର ଉଲ୍ଲେଖ ରହିଛି । ଏହାଙ୍କର ଯଜମାନ ଦିବୋଦାସ ଓ ସମଗ୍ର ଆର୍ଯ୍ୟଜନର ପ୍ରବଳ ଶତ୍ରୁ ଶମ୍ବର ନାମକ ଦସ୍ୟୁ-ରାଜା ଥିବା କଥା ଏହାଙ୍କ ରଚିତ ଋକ୍‌-ମାନଙ୍କରେ ରହିଛି । ଶମ୍ବର ବ୍ୟତୀତ ଚୁମୁରି, ଧୁନି, ଶୁଷ୍ଣ, ଅଶୁଷ, ପିପ୍ରୁ ନାମକ ଅନ୍ୟାନ୍ୟ ଆର୍ଯ୍ୟବିରୋଧୀ ଅସୁର ରାଜାଙ୍କ ଉଲ୍ଲେଖ ଭରଦ୍ୱାଜ ମଧ୍ୟ କରିଛନ୍ତି । ଏମାନେ ସମସ୍ତେ ପାହାଡ଼ୀ ରାଜା ଥିଲେ ଓ ଶମ୍ବରଙ୍କର ସହଯୋଗୀ ଥିଲେ । ଭରଦ୍ୱାଜଙ୍କ ବର୍ଣ୍ଣନାରେ ଯେଉଁ ଅସ୍ତ୍ରଶସ୍ତ୍ରର ଉଲ୍ଲେଖ ରହିଛି, ସେଥିରୁ ଏହି ଶମ୍ବର ପ୍ରଭୃତି ଆର୍ଯ୍ୟ-ବିରୋଧୀଙ୍କ ଶକ୍ତି କଳନା କରି ହୁଏ । ଭରଦ୍ୱାଜଙ୍କ ଋକ୍‌ମାନଙ୍କରେ ଅସ୍ତ୍ରଶସ୍ତ୍ର ଭାବରେ ବର୍ମ (କବଚ), ଧନୁ, ଜ୍ୟା, ଇଷୁଧି, ରଥ, ଘୋଡ଼ା, ପରଶୁର ଉଲ୍ଲେଖ ରହିଛି ।

କୃଷିଜମି ଓ ଅରଣ୍ୟ —ଏ ଉଭୟର ଆବଶ୍ୟକତା ସେତେବେଳେ ଥିଲା । ତାହାର ଉଲ୍ଲେଖ ମଧ୍ୟ ଭରଦ୍ୱାଜ କରିଛନ୍ତି* । ଯେଉଁ ଶସ୍ୟ ଉତ୍ପନ୍ନ ହେଉଥିଲା, ସେଥିରୁ କରମ୍ଭ (ଛତୁଆ) ତିଆରି

---

* ସରସ୍ୱତ୍ୟଭି ନୋ ନେଷି ବସ୍ୟୋ ମା
ପସ୍ଫରୀଃ ପୟସା ମା ନ ଆ ଧକ୍
ଜୁଷସ୍ୱ ନଃ ସଖ୍ୟା ବେଶ୍ୟା ଚ ମା
ତ୍ୱତ୍‌କ୍ଷେତ୍ରାଣ୍ୟରଣାନି ଗନ୍ମ ॥୧୪॥ – ୬।୬୧

କରି ଦହି ସହିତ ଖାଉଥିଲେ । ପ୍ରଧାନ ଭୋଜନ ଥିଲା ଦୁଧ ଓ ମାଂସ । ଏଥିଲାଗି ଗୋଟିଏ ଗୋଟିଏ ପରିବାର ପାଖରେ ହଜାର ହଜାର ଗାଈ ଥିଲେ । ଏହିମାନଙ୍କ ଲାଗି ଗୋଚରଣଭୂମିର ମଧ୍ୟ ଆବଶ୍ୟକତା ଥିଲା । ଘୋଡ଼ା ଯୁଦ୍ଧ ପାଇଁ ଅତ୍ୟନ୍ତ ଉପଯୋଗୀ ଥିଲେ ଓ ସାଧାରଣ ଭାବେ ବାହକରୂ ମଧ୍ୟ କାର୍ଯ୍ୟ କରୁଥିଲେ ।

ଦିବୋଦାସଙ୍କ ପୁତ୍ର ସୁଦାସଙ୍କଦ୍ୱାରା ବଶିଷ୍ଠ ଅଶ୍ୱମେଧ ଯଜ୍ଞ କରାଇଥିଲେ * । ଅଶ୍ୱମେଧ ଯଜ୍ଞର ଉଲ୍ଲେଖ ହେଉଛି— ଏହିଠାରେ ହିଁ ପ୍ରଥମ ଓ ସର୍ବପ୍ରାଚୀନ । ଏହା ପୂର୍ବରୁ ଆଉ କେଉଁଠି ଅଶ୍ୱମେଧ ଯଜ୍ଞର କଥା ଉଲ୍ଲେଖ ଥିବା ଜଣାଯାଇ ନାହିଁ । ଗୋଦାନ ଓ ଅଶ୍ୱଦାନ ପ୍ରଚଳିତ ଥିଲା । ଗୋରୁ ଓ ଘୋଡ଼ା ପାଇଁ ଆର୍ଯ୍ୟ ଋଷିମାନେ ଯେଉଁ ପ୍ରାର୍ଥନା କରିଛନ୍ତି, ସେଇଥିରୁ ଏହା ସ୍ପଷ୍ଟ ଅନୁମେୟ ।

---

* ଐତରେୟ—୮।୪।୨୧

# ବଶିଷ୍ଠଙ୍କ ଋକ୍‌ରେ ଇତିହାସ

ଏହାଙ୍କ ରଚିତ ସୂକ୍ତ ସଂଖ୍ୟା ଏକ ଶତକ । ସଂଖ୍ୟା ଦୃଷ୍ଟିରୁ ଏହାଙ୍କ ପରବର୍ତ୍ତୀ ହେଉଛନ୍ତି ଭରଦ୍ୱାଜ । ତାଙ୍କର ସୂକ୍ତ ସଂଖ୍ୟା ଷାଠିଏ । ଏହାଙ୍କ ରଚନାରୁ ଯେଉଁ ପରିମାଣରେ ଇତିହାସ ଓ ଭୌଗୋଳିକ ସ୍ଥାନ ଓ ତଥ୍ୟ ମିଳେ, ସେପରି ଆଉ କୌଣସି ଋଷିଙ୍କ ସୂକ୍ତରୁ ମିଳେ ନାହିଁ ।

ବଶିଷ୍ଠଙ୍କ ଜୀବନର ସବୁଠାରୁ ବଡ଼ ଘଟଣା ଓ ସଫଳତା ଦଶ-ରାଜ୍ଞ ବା ଦଶ-ରାଜ ଯୁଦ୍ଧରେ ସୁଦାସଙ୍କର ବିଜୟ ଅର୍ଥାତ୍ ସପ୍ତ-ସିନ୍ଧୁର ବିକ୍ଷିପ୍ତ ଆର୍ଯ୍ୟଜନଙ୍କୁ ଏକତାବଦ୍ଧ କରିବା ।

# ବିଶ୍ୱାମିତ୍ର

ଋଗ୍‌ବେଦର ତୃତୀୟ ମଣ୍ଡଳର ଋଷି ବିଶ୍ୱାମିତ୍ରଙ୍କ ମହତ୍ତ୍ୱ ବଶିଷ୍ଠ ଓ ଭରଦ୍ୱାଜଙ୍କ ସହ ସମକକ୍ଷ । ବିଶ୍ୱାମିତ୍ର ଓ ବଶିଷ୍ଠଙ୍କର ଯେଉଁ ବର୍ଣ୍ଣନା ଆମେ ରାମାୟଣରେ ପାଉ, ତାହାର ସମ୍ବନ୍ଧ ଋଗ୍‌ବେଦ ସହିତ ନାହିଁ ଓ ତାହାର ମଧ୍ୟ କୌଣସି ଐତିହାସିକ ତଥ୍ୟ ନାହିଁ । ତାହା କେବଳ ପୌରାଣିକ କଳ୍ପନା ମାତ୍ର । ଇନ୍ଦ୍ର, ବରୁଣ, ବୃହସ୍ପତି, ପୂଷା, ସବିତା, ସୋମ, ମିତ୍ର ଆଦି ଦେବତାମାନଙ୍କୁ ଏ ସ୍ତୁତି କରିଛନ୍ତି । ସର୍ବପ୍ରଥମ ଏହି ଋଷି ୩୩ ଜଣ ଦେବତାଙ୍କ କଥା * ଉଲ୍ଲେଖ କରିଛନ୍ତି । ନିଜ ସାଥି ଜମଦଗ୍ନି ଓ ନିଜ ବଂଶ କୁଶିକଙ୍କ କଥା ଏ ଉଲ୍ଲେଖ କରିଛନ୍ତି ।

ବିଶ୍ୱାମିତ୍ର ସୁଦାସଙ୍କୁ ବଡ଼ କରିଛନ୍ତି, ସିନ୍ଧୁ (ନଦୀ)କୁ ସ୍ତମ୍ଭିତ କରିଥିଲେ † ଓ ସୁଦାସଙ୍କର ବିଜୟ ଲାଗି ସହାୟତା କରିଥିଲେ ।

ଏହାଙ୍କ ପୁତ୍ରମାନଙ୍କ ମଧ୍ୟରୁ ମଧୁଚ୍ଛନ୍ଦା, ଋଷଭ, ରେଣୁ ଓ ଋତ ଋଷି ଅନ୍ୟତମ । ଐତରେୟ ବ୍ରାହ୍ମଣରେ ଉଲ୍ଲେଖ ଅଛି—"ବିଶ୍ୱାମିତ୍ରଙ୍କର ଶହେ ପୁତ୍ର ଥିଲେ । ୫୦ ଜଣ ମଧୁଚ୍ଛନ୍ଦାଙ୍କଠାରୁ

---

* ତ୍ରିଂଶତଂ ତ୍ରୀଂଶ୍ଚ ଦେବାନ୍ (—୯।୩।୬)

† ମହାଂ ଋଷିର୍ଦେବଜା ଦେବଜୂତୋ-
ସ୍ତମ୍ନାତ୍ ସିନ୍ଧୁମର୍ଣବଂ ନୃଚକ୍ଷାଃ
ବିଶ୍ୱାମିତ୍ରୋ ଯଦବହତ୍ ସୁଦାସ-
ମପ୍ରିୟାୟତ କୁଶିକେଭିରିନ୍ଦ୍ରଃ ।୯।
—୩।୫୩

ବଡ଼ ଓ ୫୦ ଜଣ ସ୍ରେଷ୍ଠ । ଏଥି ମଧ୍ୟରେ ଶୁନଃଶେପ ଅଛନ୍ତି । ପିତା ଅଜୀଗର୍ତ୍ତ ଋଷି ୩୦୦ ଗାଈ ପାଇବା ବଦଳରେ ପୁଅ ଶୁନଃଶେପଙ୍କୁ ଯଜ୍ଞରେ ବଳି ଦେବାକୁ ସ୍ଥିର କରିଥିଲେ । ଶୁନଃଶେପ ବିଶ୍ୱାମିତ୍ରଙ୍କ ନିକଟକୁ ଚାଲିଯାଇ ଜୀବନ ପ୍ରାର୍ଥନା କରିବାରୁ ସେ ଶୁନଃଶେପଙ୍କ ଜୀବନ ରକ୍ଷା କଲେ । ଏଣୁ ବିଶ୍ୱାମିତ୍ରଙ୍କ ପୁତ୍ରମାନଙ୍କ ମଧ୍ୟରେ ତାଙ୍କୁ ଗଣାଯାଇଛି । ବିଶ୍ୱାମିତ୍ର ବଡ଼ ପୁଅମାନଙ୍କୁ ଭଲ ପାଉ ନ ଥିଲେ । ତେଣୁ ସେ ଶାପ ଦେଲେ—"ତୁମ୍ଭର ସନ୍ତାନ ଅଭକ୍ଷଭକ୍ଷୀ ହୋଇଯାନ୍ତୁ ।"

# ବାମଦେବ

ଗୌତମଙ୍କ ପୁତ୍ର ବାମଦେବ ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କଠାରୁ ଭିନ୍ନ ଗୋଷ୍ଠୀର ଋଷି ଥିଲେ । ଏହାଙ୍କର ପ୍ରତିଷ୍ଠା ଉକ୍ତ ୩ ଜଣ ଋଷିଙ୍କର ସମକକ୍ଷ ଥିଲା । ବିଶ୍ୱାମିତ୍ରଙ୍କ ସୂକ୍ତଗୁଡ଼ିକୁ ବାମଦେବ ପ୍ରସାର କରିଥିଲେ । ବାମଦେବ ଭରତ ଜନ ତଥା ତାହାର ରାଜାଙ୍କ ମହିମା ଗାନ କରିଛନ୍ତି । ସୃଂଜୟର ରାଜା ଦେବବାତ, ବୈଦଥୀ ଋଜିଶ୍ୱା, ଅର୍ଜ୍ଜୁନେୟ କୁତ୍ସ—ଏହି ରାଜାମାନଙ୍କୁ ମଧ୍ୟ ବାମଦେବ ପ୍ରଶଂସା କରିଛନ୍ତି । ଦିବୋଦାସ ଓ ସୁଦାସଙ୍କ ସଫଳ କାମନା କରିଛନ୍ତି । ଦିବୋଦାସଙ୍କ ଯୁଦ୍ଧରେ ୩୦ ହଜାର ଦାସ ମୂର୍ଚ୍ଛିତ ହେବା କଥା ଏହାଙ୍କ ସୂକ୍ତରେ ଉଲ୍ଲେଖ ଅଛି । ୫୦ ହଜାର କୃଷ୍ଣଙ୍କୁ (କଳା ଅସୁର) ମରାଯାଇଥିବା କଥା ବାମଦେବ ଉଲ୍ଲେଖ କରିଛନ୍ତି * ।

ଦାସମାନଙ୍କ ରାଜା ଶମ୍ବରଙ୍କ ଉଲ୍ଲେଖ ଏହାଙ୍କ ସୂକ୍ତରେ ରହିଛି । ତୁର୍ବଶ ଓ ଯଦୁ—ଦୁଇଟି ପ୍ରଭାବଶାଳୀ ଆର୍ଯ୍ୟଜନର ଉଲ୍ଲେଖ ଅଛି । "କୃଷନ୍ତୁ ଲାଂଗଲଃ" (୪।୧୭।୪), ଫାଳ, ହଳ ଯୋଚିବା, କୃଷି ପ୍ରଭୃତ ସମ୍ବନ୍ଧୀୟ ଉଲ୍ଲେଖ ରହିଛି । ମୃଦୁହାସିନୀ

---

* ତ୍ୱଂ ପିପ୍ରୁଂ ମୃଗୟଂ ଶୂଶୁବାଂସ-
ମୃଜିଶ୍ୱନେ ବୈଦଥିନାୟ ରନ୍ଧୀଃ ।
ପଞ୍ଚଶତ୍ କୃଷ୍ଣା ନିବପଃ ସହସ୍ରାତ୍କଂ
ନ ପୁରୋ ଜରିମା ବଦଦଃ ।୧୩।

—୪।୧୬

ସୁନ୍ଦର ସ୍ତ୍ରୀମାନଙ୍କ ✻ କଥା (ଯୋଷାଃ କଲ୍ୟାଣ୍ୟଃ ସ୍ମୟମାନାଃ) ଏହାଙ୍କ ସୂକ୍ତରେ ଉଲ୍ଲେଖ ରହିଛି । ବାମଦେବ ଓ ନୋଧାଙ୍କ ପିତା ଗୌତମ ଓ ପିତାମହ ରହୁଗଣ ବୋଲି ରହିଛି । ବାମଦେବଙ୍କ ପୁତ୍ର ମୂର୍ଧନ୍ୱା, ବୃହଜ୍‌ଦିବ ଓ ବୃହଦୁକ୍‌ଥ ଋଷଙ୍କ ନାମ ରହିଛି ।

---

✻ ଅଭି ପ୍ରବନ୍ତ ସମନେବ ଯୋଷାଃ
କଲ୍ୟାଣ୍ୟଃ ସ୍ମୟମାନାସୋ ଅଗ୍ନିଂ
ଘୃତସ୍ୟ ଧାରାଃ ସମିଧୋ ନସନ୍ତ
ତା ଜୁଷାଣୋ ହର୍ଯତି ଜାତବେଦାଃ ।୮

—୪।୫୮

# ଅନାଥାନାଥ ଋଷି

ଗୃତ୍ସମଦ—ଏହି ଋଷି ଶୌନକଙ୍କ ପୁତ୍ର ଓ ଅଙ୍ଗିରାଙ୍କ ବଂଶଜ ଥିବା ଉଲ୍ଲେଖ ଅଛି ।

ଦିବୋଦାସ ଓ ଶମ୍ବରଙ୍କ ସଂଘର୍ଷ ବିଷୟରେ ଏ ମଧ୍ୟ ଉଲ୍ଲେଖ କରିଛନ୍ତି । ଦିବୋଦାସ ୯୯ଟି ପୁର (କଲ୍ଲ) ଜିତିଛନ୍ତି *, ଶମ୍ବରଙ୍କର ଶହେ ପୁର ଧ୍ୱଂସ ହୋଇଛି + । କୃଷ୍ଣଯୋନି (କଳାଜାତି, ଦାସ )ମାନେ ଶତ୍ରୁ ଥିଲେ × । ଶମ୍ବରଙ୍କ ବ୍ୟତୀତ ସ୍ୱପ୍ନ, ଶୁଷ୍ଣ, ଅଶୁଷ, ବ୍ୟଂସ, ପିପ୍ରୁ, ନମୁଚି †, ଚୁମୁରି, ଧୁନି ‡, କୁଯ୍ୟବ × ଦାସ-ରାଜାମାନଙ୍କର ଉଲ୍ଲେଖ ମଧ୍ୟ ଏହାଙ୍କ ସୂକ୍ତରେ ରହିଛି ।

ପାହାଡ଼ବାସୀ ଶମ୍ବର ୪୦ ବର୍ଷ ପର୍ଯ୍ୟନ୍ତ § ଆର୍ଯ୍ୟମାନଙ୍କ ଅଧୀନକୁ ଆସି ନାହିଁ ।

---

* ଏଜନ—୨।୧୯।୬

\+ ,, ୨।୧୪।୬-୭

× ,, —୨।୨୦।୭

† ,, ୨।୧୪।୫

‡ ,, —୨।୧୫।୯

× ୫୪।୨।୧୯।୬

§ ଯଃ ଶମ୍ବର ପର୍ବତେଷୁ କ୍ଷିୟନ୍ତଂ
ଚତ୍ୱାରିଂଶ୍ୟାଂ ଶରଦ୍ୟନ୍ୱବିନ୍ଦତ୍ ।
ଓଜାୟମାନଂ ଯୋ ଅହିଂ ଜଘାନ ଦାନୁଂ
ଶୟାନଂ ସ ଜନାସ ଇନ୍ଦ୍ରଃ ।୧୧।
—୨।୧୨

ସୋମକୁ ପେଷଣ କରି ଗୁଣି କଳସରେ ରଖାଯାଉଥିବା କଥା ଏହାଙ୍କ ସୂକ୍ତ (୯।୮୭।୪୭)ରୁ ଜଣାଯାଏ । କକ୍ଷୀବାନ୍, ଅଗସ୍ତ୍ୟ, ଦୀର୍ଘତମା, ଗୌତମ, ମେଧାତିଥି, ଶ୍ୟାବାଶ୍ୱ, କୁତ୍ସ, ମଧୁଚ୍ଛନ୍ଦା, ପ୍ରସ୍କଣ୍ୱ ପ୍ରମୁଖ ପ୍ରାୟ ତିନିଶତାଧିକ ଋଷିଙ୍କର ଉଲ୍ଲେଖ ଋଗ୍‌ବେଦରେ ମିଳେ ।

ଏମାନଙ୍କ ବ୍ୟତୀତ ଅପାଲା ନାମକ ଆର୍ଯ୍ୟନାରୀଙ୍କର ଗୋଟିଏ ସୂକ୍ତ ଋଗବେଦ (୮।୮୦)ରେ ମିଳେ ।

# ଦସ୍ୟୁ

ସିନ୍ଧୁ ଉପତ୍ୟକାରେ ପ୍ରବେଶ କରିବା ସମୟରେ ଆର୍ଯ୍ୟମାନେ ଯେଉଁ ଜାତିଙ୍କ ସହିତ ସମ୍ମୁଖୀନ ହେଲେ, ସେଥିମଧ୍ୟରେ ଥିଲେ ସିନ୍ଧୁ-ଜାତି ଓ ପାହାଡ଼ୀ ଜାତୀୟ ଲୋକ । ଏ ଉଭୟ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଆର୍ଯ୍ୟମାନେ କୃଷ୍ଣ (କଳା) ବା କୃଷ୍ଣଯୋନି ଓ ଦାସ ବା ଦାସ୍ୟୁ କହୁଥିଲେ । ଏହି ସମୟରେ ସିନ୍ଧୁ-ଜାତିର ପ୍ରତିନିଧି ଥିଲେ 'ପଣି' ।

ଏମାନେ ସିନ୍ଧୁ-ଜାତିଙ୍କ ମଧ୍ୟରେ ଧନବାନ ଥିଲେ । ଏହି ଧନୀ ଲୋକଙ୍କୁ 'ପଣି' କୁହାଯାଉଥିଲା । ଏମାନଙ୍କ ଜୀବିକା ମୁଖ୍ୟତଃ ବ୍ୟବସାୟ ହିଁ ଥିଲା । 'ପଣି' ଶବ୍ଦ ସହିତ ପଣନ (ବିକିବା), ପଣ୍ୟ (ବିକ୍ରୟ ବସ୍ତୁ), ଆପଣ (ବଜାର), ବଣିକ (ବଣିଆ) ଶବ୍ଦର ସମ୍ବନ୍ଧ ରହିଛି । ଏମାନେ ଶାସନରୁ ବଞ୍ଚିତ ହୋଇ କୃଷି ଓ ବାଣିଜ୍ୟରୁ ନିଜର ଜୀବିକା ନିର୍ବାହ କରୁଥିଲେ; କିନ୍ତୁ ବାଣିଜ୍ୟ ଅଧିକ ଲାଭଜନକ ଥିଲା । ଋଗ୍‌ବେଦରେ 'ପଣି'ର ଉଲ୍ଲେଖ ବହୁ ସ୍ଥାନରେ ରହିଛି । ଏମାନେ କଞ୍ଜୁସ ବା ଗ୍ରେଠା ଥିବା ସେଥିରେ ଉଲ୍ଲେଖ ରହିଛି ।

# ଶମ୍ବରୀୟ ପାହାଡ଼ୀ ଓ ମୋନ୍-ଖ୍ମେର
## (କିରାତ)

ପାହାଡ଼ୀ ଲୋକମାନେ ଋଗ୍‌ବୈଦିକ ଆର୍ଯ୍ୟମାନଙ୍କର ମୁଖ୍ୟ ଶତ୍ରୁ ଥିଲେ । ପାହାଡ଼ୀ ଶମ୍ବରୀୟମାନେ ଦିବୋଦାସଙ୍କ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ଏହି ପାହାଡ଼ର ଲୋକମାନଙ୍କୁ ଆର୍ଯ୍ୟମାନେ ଦାସ ଓ ଦସ୍ୟୁ ନାମରେ ନାମିତ କରିଛନ୍ତି । 'ପଣି'ଙ୍କୁ ମଧ୍ୟ ଏହି ଭାବରେ ନାମିତ କରାଯାଇଛି । କାରଣ 'ପଣିମାନେ' ସିନ୍ଧୁ ଜାତିର ଲୋକ ଥିଲେ ।

ଋଗ୍‌ବେଦରେ 'କିରାତ' ଶବ୍ଦର ବ୍ୟବହାର ନାହିଁ । ବିଦ୍ୱାନ୍ ଲୋକେ ସଂସ୍କୃତର କିରାତକୁ 'ମୋନ-ଖ୍ମେର' ନାମରେ ଅଭିହିତ କରିଛନ୍ତି । କିରାତ ବା ମୋନ୍-ଖ୍ମେର ଜାତିର ଲୋକେ ଆଜି ମଧ୍ୟ ହିମାଳୟ ଅଞ୍ଚଳରେ ଦେଖାଯାନ୍ତି । ଏବେ ବି ନେପାଳକୁ କିରାତ ଦେଶ ବୋଲି କୁହାଯାଏ । କିରାତ ବା ମୋନ-ଖ୍ମେରଙ୍କ ମୁହଁ ମଙ୍ଗୋଲଏଡ଼ ମୁଖମଣ୍ଡଳ ସହିତ ତୁଳନୀୟ ।

ବର୍ମାର ପୁରାତନ ବାସିନ୍ଦାଙ୍କୁ ବର୍ମା ଭାଷାରେ ମୋନ୍ କୁହାଯାଏ । କାମ୍ବୋଡ଼ିଆ (କମ୍ବୋଜ)ର 'ଖ୍ମେର' ଶବ୍ଦଟି ମିଶାଇ ଏହି ଜାତୀୟ ଲୋକଙ୍କୁ 'ମୋନ୍-ଖ୍ମେର' ବୋଲି ବିଦ୍ୱାନ୍‌ମାନେ ନାମିତ କରିଛନ୍ତି ।

# ଆଦିମ ଆର୍ଯ୍ୟ ରାଜା

ଋଗ୍‌ବେଦରେ ପାଞ୍ଚ ଜଣ ପ୍ରଭାବଶାଳୀ ରାଜାଙ୍କ ନାମ ମିଳେ । ସେମାନେ ହେଲେ—ମନୁ, ପୁରୁରବା, ନହୁଷ, ଯଯାତି ଓ ମାନ୍ଧାତା ।

## ମନୁ

ଋଗ୍‌ବେଦରେ ମନୁଙ୍କ ନାମ ୩୯ଟି ସ୍ଥାନରେ ମିଳେ । ସଦାପୃଣ ଋଷିଙ୍କ ସୂକ୍ତ * ରୁ ଜଣାଯାଏ ଯେ ମନୁ ବଶିଶିପ୍ରଙ୍କୁ ଜିଣିଥିଲେ । କିନ୍ତୁ ବଶିଶିପ୍ର ଆର୍ଯ୍ୟ ଶତ୍ରୁ କି ଅନାର୍ଯ୍ୟ ଶତ୍ରୁ ସେ କଥାର ଉଲ୍ଲେଖ ନାହିଁ । ତେବେ ଦସ୍ୟୁ ବା ଦାସମାନଙ୍କ ସହିତ ସଂଘର୍ଷରେ ମନୁଙ୍କ ମହତ୍ତ୍ୱ ବଢ଼ିଥିବା ନିଶ୍ଚିତ । ମନୁ ଆର୍ଯ୍ୟଙ୍କର ପ୍ରଥମ ଓ ପ୍ରଭାବଶାଳୀ ରାଜା ଥିଲେ ।

## ପୁରୁରବା

ପୁରୁରବା ବୀର ଥିଲେ । ଅପ୍‌ସରା ଉର୍ବଶୀଙ୍କ ସହିତ ଏହାଙ୍କର ପ୍ରେମ ଅତି ରୋମାଞ୍ଚକର ଘଟଣା ଥିଲା । ଏହି ପ୍ରେମର ବର୍ଣ୍ଣନା ଋଗ୍‌ବେଦର ଦଶମ ମଣ୍ଡଳରେ କରାଯାଇଛି । ଉର୍ବଶୀ ଓ ପୁରୁରବାଙ୍କ

---

* ଏତା ଧିୟଂ କୃଣବାମ ସଖାୟୋ'ପ
ଯାମାତାଁ ଋଣୁତ ବ୍ରଜଂ ଗୋଃ ।
ଯୟା ମନୁର୍ବିଶିଶିପ୍ରଂ ଜିଗାୟ ଯୟା
ବଣିଗ୍ୱଂକୁରାପା .ପୁରୀଷଂ ॥ ୬ ॥
(—ପ୍ରଜାପତି ଆତ୍ରେୟ—୫।୪୫)

ଉକ୍ତ-ପ୍ରତ୍ୟୁକ୍ତିରୁ ସ୍ପଷ୍ଟ ଜଣାଯାଏ (୭।୧୦-୧୫) ଯେ ପୁରୁରବା ଦସ୍ୟୁଙ୍କ ସହିତ ଯୁଦ୍ଧରେ ଭାଗ ନେଉଥିଲେ । ଏହାଙ୍କ ମାତାଙ୍କ ନାମ ହେଉଛି—ଇଲା ।

## ନହୁଷ

ବଶିଷ୍ଠ କହିଛନ୍ତି, ଅଗ୍ନି ନହୁଷଙ୍କୁ ପ୍ରଜାମାନଙ୍କର ବଳିହୃତ (ଶୁଳ୍କ ପାଇବା ବ୍ୟକ୍ତି) କରିଛନ୍ତି । ଏହି କଥାକୁ ହିରଣ୍ୟସ୍ତୂପ ଅଙ୍ଗିରସ (୧।୩୧।୧୧) ଦୋହରାଇ କହିଛନ୍ତି—ଦେବମାନେ ନହୁଷଙ୍କୁ ପ୍ରଜାମାନଙ୍କର ପତି କରିଛନ୍ତି ।

## ଯଯାତି

ହେୟୁପ୍ଲାତ ଋଷିଙ୍କ ଅନୁସାରେ ଯଯାତି ନହୁଷଙ୍କ ପୁତ୍ର ।

## ମନ୍ଧାତା

ମନ୍ଧାତା ଦସ୍ୟୁହନ୍ତା ପ୍ରାଚୀନ ଆର୍ଯ୍ୟରାଜା ଥିବା ଋଗବେଦରେ ଉଲ୍ଲେଖ ଅଛି ।

# ଦସ୍ୟୁ

## ଶମ୍ବର

ଆର୍ଯ୍ୟମାନେ ନିଜର ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଦାସ କହୁଥିଲେ । ଋଗ୍‌ବେଦ ସମୟରେ (୧୨୦୦ ଖ୍ରୀ:ପୂ:) ଏମାନଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ପର୍ବତବାସୀ ଦାସ ବା ଦସ୍ୟୁ ଥିଲେ । ପାର୍ବତୀୟ ଦାସ ହିମାଳୟର କିରାତମାନେ ଥିଲେ । "ଏହି କୃଷ୍ଣଯୋନି ଦାସଙ୍କୁ ଇନ୍ଦ୍ର ନାଶ କଲେ (୨।୨୦।୭)" । ଇନ୍ଦ୍ର କୃଷ୍ଣଚର୍ମଡ଼ାବାଲଙ୍କୁ ମାରିଲେ (୧।୧୩୦।୮) ବୋଲି ପରୁଚ୍ଛେପ କହିଛନ୍ତି । ପରୁଚ୍ଛେପ ପାର୍ବତୀୟ ଦାସମାନଙ୍କର ପୁଅ । ବଶିଷ୍ଠ ଏହି କଳା ବର୍ଣ୍ଣର ଦାସମାନଙ୍କୁ ଶିଶ୍ନଦେବ କହିଛନ୍ତି (୭।୨୧।୫) । ଶିଶ୍ନଦେବର ଅର୍ଥ ଲିଙ୍ଗକୁ ଦେବତା ମାନ୍ୟରେ ପୂଜିବା ଲୋକେ । ଏପରି କି ମହେଞ୍ଜୋଦାରୋ-ହରପ୍ପାର ପୂଜାସାମଗ୍ରୀ ମଧ୍ୟରେ ପାଷାଣ-ଲିଙ୍ଗ ମିଳିଛି । ନାଗକୁ ତ ସେମାନେ ଦେବତା-ରୂପେ ମାନୁଥିଲେ । ଏହାର ବହୁ ନାମାବଶେଷ ହିମାଳୟରେ ମିଳେ ।

ଭରଦ୍ୱାଜ ଶମ୍ବର-ହନ୍ତା ରାଜା ଦିବୋଦାସଙ୍କ ପୁରୋହିତ ଥିଲେ । ପୁରୋହିତ ଅର୍ଥ ଦେବତାମାନଙ୍କୁ ସ୍ତୁତି କରିବା ବ୍ୟକ୍ତି । ଯଜ୍ଞ-ସମ୍ପାଦକ ଅର୍ଥରେ ତାହା ସେତେବେଳେ ପ୍ରଯୁକ୍ତ ନ ଥିଲା । ପରେ ଯଜ୍ଞ-ସଂପାଦକ ଅର୍ଥରେ ପୁରୋହିତ ଶବ୍ଦର ଅର୍ଥାନ୍ତର ହୋଇଛି ।

ଆର୍ଯ୍ୟମାନେ ଶତ୍ରୁମାନଙ୍କର ସମସ୍ତ ଦୁର୍ଗୁଣ ବର୍ଣ୍ଣନା କରିଛନ୍ତି । ଆର୍ଯ୍ୟମାନଙ୍କର ସମସ୍ତ ସଫଳତା ଦେବତାଙ୍କ ଉପରେ ଆରୋପିତ ହୋଇଛି । ଅଧ୍ରିଯଶ୍ବ, କୁତ୍ସ, ଦିବୋଦାସ, ସୁଦାସ କିମ୍ବା ଏହାଙ୍କର

ମନ୍ତ୍ରଦାତା ଭରଦ୍ୱାଜ, ବଶିଷ୍ଠ, ବିଶ୍ୱାମିତ୍ର ପ୍ରଭୃତି । ବସ୍ତୁତଃ ସବୁ କାମ ଇନ୍ଦ୍ର କରିଛନ୍ତି । ମନୁଷ୍ୟ କେବଳ ବିଜେତା ଇନ୍ଦ୍ରଙ୍କ ହାତର ହତିଆର ଥିବା କଥା ଉଲ୍ଲେଖ ଅଛି । "ହେ ଇନ୍ଦ୍ର, ଧର୍ମୀ ଦସ୍ୟୁଙ୍କୁ ମାର" (ହିରଣ୍ୟସ୍ତୁପ—୩।୩୩।୪) । "ଇନ୍ଦ୍ର, ଦାସ ପ୍ରଜାଙ୍କୁ ଅଭିଭୂତ କର ।" (ଗୃତ୍ସମଦ— ୨।୧୧।୪) । ଋଷି ବାମଦେବ କହିଛନ୍ତି, (୪।୧୬।୧୩) "ଇନ୍ଦ୍ର ୫୦ ହଜାର କୃଷ୍ଣ (କଳା)ଙ୍କୁ ମାରିଲେ । ସେମାନଙ୍କ ଦୁର୍ଗଗୁଡ଼ିକୁ (ପୁର) ଧ୍ୱସ୍ତ କଲେ ।"

ଆର୍ଯ୍ୟଙ୍କ ସହିତ ଦସ୍ୟୁମାନଙ୍କ ଲଢ଼େଇରେ ସ୍ତ୍ରୀମାନେ ମଧ୍ୟ ଭାଗ ନେଉଥିଲେ । ବଭ୍ରୁଙ୍କର ଏକ ଋକ୍ * ରେ ଅଛି— "ଦାସମାନେ ସ୍ତ୍ରୀମାନଙ୍କୁ ଆୟୁଧ (ହତିଆର) କରିଛନ୍ତି ।" ଏଥିପାଇଁ ଇନ୍ଦ୍ର କହିଛନ୍ତି—"ସେମାନଙ୍କ ଅବଳା ସେନା ମୋର କ'ଣ କରିବେ ?" †

ଋଗ୍‌ବେଦର ସବୁଠାରୁ ପୁରୁଣା ଜ୍ଞାତ ଆର୍ଯ୍ୟ-ଶାସକଙ୍କ ନାମ ମନୁ । ମନୁ ଋଷି ଓ ବିଜେତା ଥିଲେ । ଦସ୍ୟୁମାନଙ୍କ ସହିତ

---

* ସ୍ତ୍ରିୟୋ ହି ଦାସ ଆୟୁଧାନି ଚକ୍ରେ
କିଂ ମା କରନ୍ନବଳା ଅସ୍ୟ ସେନାଃ ।
ଅନ୍ତର୍ହ୍ୟଖ୍ୟଦୁଭେ ଅସ୍ୟ ଧେନେ
ଅଥୋପ ପ୍ରୈଦ୍ୟୁଧୟେ ଦସ୍ୟୁମିନ୍ଦ୍ରଃ ॥୯॥ —୫।୩୦

† ସ୍ତ୍ରୀମାନଙ୍କ ଉଦ୍ଦେଶ୍ୟରେ "ଅବଳା" ଶବ୍ଦର ପ୍ରୟୋଗ ଏହିଠାରେ ହିଁ ପ୍ରଥମେ ପ୍ରୟୋଗ ହୋଇଛି, ଯେଉଁଥିରୁ ଜଣାଯାଏ ଯେ ସ୍ତ୍ରୀମାନଙ୍କର ଯୋଦ୍ଧା ହେବାର ଯୋଗ୍ୟତା ନାହିଁ । 'ଅବଳା' ଶବ୍ଦର ପ୍ରୟୋଗ ଏହା ପୂର୍ବରୁ କୁଆପି ପରିଲକ୍ଷିତ ହୁଏ ନାହିଁ ।

ଆର୍ଯ୍ୟମାନଙ୍କ ସଂଘର୍ଷର ବର୍ଣ୍ଣନା ଋଗ୍‌ବେଦର ଛନ୍ଦେ ଛନ୍ଦେ ପ୍ରତିଫଳିତ । ଯେଉଁ ଦାସ-ରାଜାଙ୍କ ନାୟକଙ୍କ ବର୍ଣ୍ଣନା ବିଭିନ୍ନ ଋଷିଙ୍କ ସୂକ୍ତରେ ମିଳୁଛି, ସେମାନଙ୍କ ମଧ୍ୟରୁ ଭରଦ୍ୱାଜଙ୍କ ସୂକ୍ତରେ (୬।୧୮।୮) —ଚୁମୁରି, ଧୁନି, ପିପ୍ରୁ, ଶମ୍ବର, ଶୁଷ୍ଣଙ୍କ ନାମ; ବଶିଷ୍ଠଙ୍କ (୭।୯୯।୪) ସୂକ୍ତରେ ଦାସ ବୃଷଶିପ୍ର, କୁତ୍ସ; ଅଙ୍ଗିରସ (୧।୧୦୩।୮)ଙ୍କ ସୂକ୍ତରେ—ଶୁଷ୍ଣ, ପିପ୍ରୁ, କୁୟବ, ବୃତ୍ର, ଶମ୍ବର; ବଶ ଅଶ୍ୱ-ପୁତ୍ର (୮।୪୬।୩୨)ଙ୍କ ସୂକ୍ତରେ ବଲବୁତ । ଏହି ଦସ୍ୟୁଙ୍କୁ ସଜ୍ଜନ ଦସ୍ୟୁ ବୋଲି କୁହାଯାଇଛି । କାରଣ ଏ ଶହେ ଦାସ ପ୍ରଦାନ କରିଥିଲେ ।

ପୁରାତନ ଦାସ ମହାବୀରଙ୍କ ମଧ୍ୟରେ ନମୁଚି ଓ ଋଗ୍‌ବେଦ-କାଳୀନ ଦାସମାନଙ୍କ ମଧ୍ୟରେ ଶମ୍ବର ମହାପରାକ୍ରମୀ ଥିଲେ ।

ଦସ୍ୟୁ ବା ଦାସମାନଙ୍କ ସଂଘର୍ଷରେ ଆର୍ଯ୍ୟମାନେ ଯେଉଁ ଦଣ୍ଡ ଦେଉଥିଲେ, ସେଥି ମଧ୍ୟରେ ଶିରଚ୍ଛେଦନ, ହତ୍ୟା, ଦୁର୍ଗ ଧ୍ୱଂସ ଇତ୍ୟାଦିର ଉଲ୍ଲେଖ ରହିଛି । ଏପରି କ୍‌ନାଭାକଙ୍କ ସୂକ୍ତ (୮।୪୦।୧୦। ୧୧)ରେ କୁହାଯାଇଛି—"ଇନ୍ଦ୍ର ଶୁଷ୍ଣ (ଦସ୍ୟୁ ସେନାପତି)ର ଅଣ୍ଡାକୁ ମଧ୍ୟ ଛିନ୍ନଭିନ୍ନ କରିଦେଲେ ।" ଦସ୍ୟୁମାନେ ମାୟାବୀ ଥିଲେ ଓ ସେମାନଙ୍କର ଯୁଦ୍ଧକୌଶଳ ଆର୍ଯ୍ୟମାନଙ୍କୁ ଜଣା ନ ଥିଲା । ତେଣୁ ମଧୁଚ୍ଛନ୍ଦାଙ୍କ ପୁତ୍ର (୧।୧୧।୭) ସୂକ୍ତରେ କହିଛନ୍ତି—"ଇନ୍ଦ୍ର, ତୁମେ ମାୟାଦ୍ୱାରା ମାୟାବୀ ଶୁଷ୍ଣଙ୍କୁ ନଷ୍ଟ କରିଛ ।"

ଋଗ୍‌ବେଦରେ ଦସ୍ୟୁ ଓ ଦାସମାନଙ୍କ ସହିତ ଯୁଦ୍ଧର ବର୍ଣ୍ଣନା ଅତ୍ୟନ୍ତ ପ୍ରକଟ । ଦୀର୍ଘ ଚାଳିଶ ବର୍ଷବ୍ୟାପୀ କେବଳ ଶମ୍ବର ଦସ୍ୟୁ ସହିତ ଯୁଦ୍ଧର ବର୍ଣ୍ଣନା ଏଥିରେ ବହୁ ସ୍ଥାନରେ ଉଲ୍ଲେଖ ରହିଛି । ତା'ପରେ ଦଶ-ରାଜ୍ଞ ବା ଦଶ-ରାଜ ଯୁଦ୍ଧ କଥା ।

# ରାଜନୈତିକ ବ୍ୟବସ୍ଥା

ସପ୍ତସିନ୍ଧୁକୁ ଯେତେବେଳେ ଆର୍ଯ୍ୟମାନେ ପ୍ରଥମେ ଆସିଲେ, ସେତେବେଳେ ସେମାନଙ୍କ ମଧ୍ୟରେ ଜନ-ବ୍ୟବସ୍ଥା ହିଁ ପ୍ରଚଳିତ ଥିଲା । ଏହି 'ଜନ' ସମ୍ପର୍କରେ ଏଙ୍ଗେଲେସ ମଣିଷର ବନ୍ୟ ଅବସ୍ଥାର ପରବର୍ତ୍ତୀ ସାମାଜିକ ସ୍ଥିତିକୁ ନିର୍ଦ୍ଦେଶ କରିଛନ୍ତି । 'ଜନ' ଶବ୍ଦଟି ହେଉଛି ପ୍ରାଚୀନ ହିନ୍ଦ-ୟୁରୋପୀୟ ( Indo-European ) ଶବ୍ଦ । ଏହାର ଅର୍ଥ ମନୁଷ୍ୟ ବା ମନୁଷ୍ୟ ଜାତି । କିନ୍ତୁ ଏଙ୍ଗେଲେସଙ୍କ 'ଜନ'ର ଅର୍ଥ ମନୁଷ୍ୟ ଜାତି ନୁହେଁ, 'ଜନ' ଏକ ବଂଶାଗତ ମନୁଷ୍ୟ ସଂପ୍ରଦାୟ । ହିନ୍ଦ ଆର୍ଯ୍ୟମାନେ ଆଫଗାନିସ୍ଥାନ କିମ୍ବା ସିନ୍ଧୁ ସମୀପରେ ପହଞ୍ଚିବା ସମୟରେ ବିଭିନ୍ନ 'ଜନ' ବା ଗୋଷ୍ଠୀରେ ବିଭକ୍ତ ଥିଲେ । ସେମାନେ ଯେଉଁ ଅଞ୍ଚଳରେ ବାସ କରୁଥିଲେ ତାହା 'ଜନ'ର ନାମ ଅନୁଯାୟୀ ନାମିତ । ଇଣ୍ଡୋ-ୟୁରୋପୀୟ ଭାଷାରେ 'ଜନ' ବୋଇଲେ ଆଦିମ କମ୍ୟୁନର ପରବର୍ତ୍ତୀ ଶ୍ରେଣୀଭେଦହୀନ ମାତୃତାନ୍ତ୍ରିକ ସମାଜକୁ ବୁଝାଇଥାଏ । ପରେ ଏହି ସମାଜ ପିତୃତାନ୍ତ୍ରିକ ସମାଜରେ ପରିଣତ ହେଲା ।

ସପ୍ତସିନ୍ଧୁ-ଆର୍ଯ୍ୟମାନଙ୍କ ମଧ୍ୟରେ ପାଞ୍ଚଟି ମୁଖ୍ୟ 'ଜନ' ଥିଲା । ସେମାନଙ୍କ ମଧ୍ୟରୁ ପୁରାତନ 'ଜନ'ର ନାମ ଥିଲା ପୁରୁ । ଏହାର ଗୋଟିଏ ଶାଖା ହେଉଛି ଭରତ ଜନ । ଋଗ୍‌ବେଦର ପ୍ରତାପଶାଳୀ ରାଜା ଦିବୋଦାସ ଓ ସୁଦାସ ଏହି ଭରତ ଜନର ରାଜା । ଆର୍ଯ୍ୟଙ୍କ ପ୍ରଭାବ ବଢ଼ାଇବାରେ ଏହି ଜନର ଅବଦାନ ଋଗ୍‌ବେଦରେ ସ୍ୱୀକୃତ । ଏହି ଭରତ 'ଜନ'ର ଖ୍ୟାତିରୁ ହିଁ

'ଭାରତ' ଦେଶର ନାମକରଣ । ଭରତ ବୋଲି ରାଜା ଥାଇପାରନ୍ତି, କିନ୍ତୁ ଏହି ଜନର ନାମକରଣରୁ ଭାରତ ହେବା ଅଧିକ ଯୁକ୍ତିଯୁକ୍ତ ।

ଜନର ନେତା ବା ମୁଖ୍ୟଙ୍କଠାରୁ ହିଁ ସାମନ୍ତତନ୍ତ୍ରର ଆରମ୍ଭ ଓ ପିତୃସତ୍ତା ସମାଜର ସ୍ୱଚ୍ଛନ୍ଦ ବାତାବରଣରୁ ରାଜା ବା ମୁଖ୍ୟଙ୍କର ନିରଙ୍କୁଶତା ବଢ଼ି ଚାଲିଲା । ସେତେବେଳେ ରାଷ୍ଟ୍ର ଓ ଜନପଦ ଏକାର୍ଥବାଚକ ଥିଲା । 'ଜନ'ଙ୍କର ନିବାସ ସ୍ଥାନ—ଜନପଦ ଓ ସାମନ୍ତଙ୍କର ପ୍ରାଧାନ୍ୟ ଥିବା ଗ୍ରାମର ଦ୍ୟୋତକ ରାଷ୍ଟ୍ର । ଗ୍ରାମର ମୁଖିଆ—'ଗ୍ରାମଣୀ', ରାଷ୍ଟ୍ରର ମୁଖିଆ—ରାଜା ' ରାଜାଙ୍କ ପାଇଁ ସମ୍ରାଟ୍, ସ୍ୱରାଟ୍, ଭୂପତି, ପତିର ମଧ୍ୟ ପ୍ରୟୋଗ ଦେଖାଗଲା । କ୍ରମେ ବଂଶଗତ ରାଜତ୍ୱର ସୃଷ୍ଟି ହେବା ପରେ ରାଜାଙ୍କ ସନ୍ତାନସନ୍ତତିଙ୍କୁ ରାଜପୁତ୍ର ଓ ରାଜଦୁହିତା ଆଖ୍ୟା ଦିଆଗଲା ।

## ଗ୍ରାମଣୀ

ଋଷି ନାଭାନେଦିଷ୍ଟ ମନୁଙ୍କୁ ଗ୍ରାମଣୀ ଉପାଧି ଦେଇଛନ୍ତି । ମନୁ ଗ୍ରାମର ମୁଖ୍ୟ ନୁହନ୍ତି, ଆର୍ଯ୍ୟସମୂହର ନେତା । ଗ୍ରାମଣୀର ସାମାଜିକ ଅର୍ଥ ଋଷି ନାଭାନେଦିଷ୍ଟଙ୍କର ସୂକ୍ତରୁ ଜଣାଯାଏ । ସେ କହିଛନ୍ତି- "ସହସ୍ର (ଗୋରୁ)ଙ୍କ ଦାତା ଗ୍ରାମଣୀ ମନୁ ଅନିଷ୍ଟ କରନ୍ତୁ ନାହିଁ, ଏହାଙ୍କ ଦକ୍ଷିଣା ସୂର୍ଯ୍ୟଙ୍କ ସମାନ ହୁଏ । ସାବର୍ଣୀ (ମନୁ)ଙ୍କୁ ଦେବତା ଆୟୁ ପ୍ରଦାନ କରନ୍ତି, ଯାହାଙ୍କ ପାଖରୁ ଆମେ ଅଶ୍ରାନ୍ତଭାବେ ଅନ୍ନ ପାଉ ।"

## ରାଷ୍ଟ୍ର

ବଶିଷ୍ଠ ବରୁଣଙ୍କୁ ରାଷ୍ଟ୍ରର ରାଜା କହିଛନ୍ତି । "ସହସ୍ର-ଚକ୍ଷୁ ଉଗ୍ର ବରୁଣ ଏହି ନଦୀମାନଙ୍କର ଜଳକୁ ଦେଖୁଛନ୍ତି" ॥୧୦॥ "ସେ

(ବରୁଣ) ରାଷ୍ଟ୍ରମାନଙ୍କର ରାଜା, ନଦୀମାନଙ୍କର ଯଶ ଅଟନ୍ତି । ତାହାଙ୍କର କ୍ଷତ୍ର (ରାଜ୍ୟ) ଅନୁପମ ଓ ସର୍ବତ୍ର ଅଟେ” ॥୧୧॥

## ବିଶ୍

‘ବିଶ୍’ର ଅର୍ଥ ଜନତା ଥିଲା, ଯେଉଁଥିରୁ ବହୁ ପରେ ‘ବୈଶ୍ୟ’ (ବିଶ୍‌ର ସନ୍ତାନ) ଶବ୍ଦ ସୃଷ୍ଟି ହେଲା । ‘ବିଶ୍’ ଶକ୍ତିଶାଳୀ ଜନର ବାଚକ ଥିଲା । ବୈଶ୍ୟ ବଣିଆ ଅର୍ଥର ବାଚକ ନ ଥିଲା । ‘ବିଶ୍’ର ରାଜାଙ୍କୁ ବାଛିବା କିମ୍ବା ରାଜାଙ୍କୁ ପଦଚ୍ୟୁତ କରିବାର ଅଧିକାର ଥିଲା ।

## ରାଜା

ବର୍ତ୍ତମାନ ରାଷ୍ଟ୍ରର ରାଜା ଅର୍ଥରେ ଏହା ପ୍ରଯୁକ୍ତ ହେଉଛି; କିନ୍ତୁ ଋଗ୍‌ବୈଦିକ କାଳରେ ଏହା ସେହି ଅର୍ଥରେ ପ୍ରଯୁକ୍ତ ନ ଥିଲା । ଇନ୍ଦ୍ରଙ୍କୁ ‘ଜନ’ମାନଙ୍କର ଅଧିକ୍ଷିପ୍ର ପତି ଓ ସାରା ଭୁବନର ରାଜା * କୁହାଯାଇଛି । ବଶିଷ୍ଠ ମଧ୍ୟ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଭରଦ୍ୱାଜଙ୍କ କଥାକୁ ସମର୍ଥନ କରିଛନ୍ତି†—“ଇନ୍ଦ୍ର, ଜଗତ (ଜଙ୍ଗମ)ର ଲୋକଙ୍କ ରାଜା, ପୃଥିବୀରେ ନାନା ପ୍ରକାର ଯେଉଁ ଧନ ଅଛି,

---

*—ସ ରାୟସ୍‌ଖାମୁପ ସୃଜା ଗୃଣାନଃ ପୁରୁଷ୍ଟୁତ ଇନ୍ଦ୍ରସ୍ୟ ଇନ୍ଦ୍ର ବସ୍ୱଃ । ପତିର୍ବଭୂଥାସମୋ ଜାନାମେକୋ ବିଶ୍ୱସ୍ୟ ଭୁବନସ୍ୟ ରାଜା ॥୪॥
(—ଭରଦ୍ୱାଜ ୬।୩୬)

†—ଇନ୍ଦ୍ରୋ ରାଜା ଜଗତଶ୍ଚର୍ଷଣୀନାମଧି କ୍ଷମି ବିଷୁରୂପଂ ଯଦସ୍ତି । ତତୋ ଦଦାତି ଦାଶୁଷେ ବସୂନି ଚୋଦଦ୍ରାଧ ଉପସ୍ତୁତଶ୍ଚିଦର୍ବାକ୍ ॥୩॥
(—ବଶିଷ୍ଠ, ୭।୨୭)

ତାହାର ରାଜା ଅଟନ୍ତି । ସେଥିରୁ ସେ ଦାତା (ଯଜମାନ)ଙ୍କୁ ଧନ ଦିଅନ୍ତି, ତାଙ୍କୁ ସ୍ତୁତି କରିବା ପରେ ଆମ ପାଖକୁ ଧନ ପଠାନ୍ତୁ ।"

ତେଣୁ ଜନମାନଙ୍କର ମୁଖ୍ୟ ହିସାବରେ 'ରାଜା' ଶବ୍ଦ ପ୍ରୟୋଗ ହୋଇଛି । ତାହା କ୍ରମେ ରାଷ୍ଟ୍ରର ରାଜା ଅର୍ଥ ଧାରଣ କରିଛି ।

## ସମ୍ରାଟ

ସମ୍ରାଟ ଅର୍ଥ ରାଜାଙ୍କ ରାଜା ନୁହେଁ । ଯାଜ୍ଞବଲ୍‌କ୍ୟ ବୃହଦାରଣ୍ୟକ ଉପନିଷଦ (୪।୨।୧)ରେ ଜନକଙ୍କୁ 'ସମ୍ରାଟ' କହିଛନ୍ତି । କିନ୍ତୁ ଜନକ କେବଳ ବିଦେହ ଜନପଦର ରାଜା ଥିଲେ ।

ଭରଦ୍ୱାଜ*ବୈଶ୍ୱାନର ଅଗ୍ନିଙ୍କୁ ମଧ୍ୟ ଉତ୍ତମ ରାଜା ଅର୍ଥରେ ସମ୍ରାଟ ବୋଲି କହିଛନ୍ତି † ।

'ଶାସ' ଶବ୍ଦ ମଧ୍ୟ ରାଜା ଅର୍ଥରେ ବ୍ୟବହୃତ ହୋଇଛି । ଇରାନରେ ଏହି 'ଶାସ' ଶବ୍ଦ 'ଶାହ'ରେ ପରିଣତ ହୋଇଛି ।

---

* ମୂର୍ଦ୍ଧାନଂ ଦିବୋଅରତିଂ ପୃଥିବ୍ୟା ବୈଶ୍ୱାନରମୃତ ଆ ଜାତମଗ୍ନିଂ
କବିଂ ସମ୍ରାଜମତିଥିଂ ଜନାନାମାସନ୍ନା ପାତ୍ରଂ ଜନୟନ୍ତ ଦେବାଃ ॥୧॥
(—ଭରଦ୍ୱାଜ, ୬।୭)

† ଅଭି ତ୍ୱା ଶୂର ନୋନୁମୋ ଦୁଗ୍ଧା ଇବ ଧେନବଃ ।
ଈଶାନମସ୍ୟ ଜଗତଃ ସ୍ୱର୍ଦୃଶମୀଶାନମିନ୍ଦ୍ର ତସ୍ଥୁଷଃ ।୨୨।
(—ବଶିଷ୍ଠ, ୭।୩୨)

'ସ' 'ହ' ରେ ପରିଣତ ହେବା ଇରାଣୀ ଭାଷାରେ ପ୍ରାୟ ଦେଖାଯାଏ ।

ଋଗ୍‌ବେଦରେ ବିଶ୍ୱାମିତ୍ରଙ୍କ ଋକ (୩।୪୭)ରେ ଏହି 'ଶାସ' ଶବ୍ଦର ଅର୍ଥ ରାଜା ଅର୍ଥରେ ପ୍ରଯୁକ୍ତ ହୋଇଛି ।

### ଈଶାନ

ରାଜାଙ୍କ ପାଇଁ ବ୍ୟବହୃତ ଏକ ଶବ୍ଦ, ଯେଉଁ ଶବ୍ଦରୁ ପରେ 'ଈଶ୍ୱର' ଓ 'ପରମେଶ୍ୱର' ଶବ୍ଦର ଉତ୍ପତ୍ତି ହୋଇଛି । ବଶିଷ୍ଠ ଇନ୍ଦ୍ରଙ୍କୁ ଈଶାନ ବୋଲି କହିଛନ୍ତି ।

### ସ୍ୱରାଟ

ରାଟ, ରାଜା ଏକାଶବ୍ଦାର୍ଥକ । ଏଥି ସହିତ ସ୍ୱ ଲାଗିବାରୁ ଏହାର ଅର୍ଥ ସ୍ୱୟଂ ରାଜା ହୋଇଛି । ଗୌତମ କହିଛନ୍ତି, "...ଇନ୍ଦ୍ର ନିଜ ଗୃହରେ ସ୍ୱରାଟ ଅଟନ୍ତି" * ।

### ନୃପତି

ହେ ନୃପତି ଇନ୍ଦ୍ର ବୋଲି କୁତ୍ସ ଆଙ୍ଗିରସଙ୍କ ସୂକ୍ତ (୮।୧।୧୦)ରେ ଉଲ୍ଲେଖ ହୋଇଛି ।

### ପତିରାଜା

...ହେ ଇନ୍ଦ୍ର, ତୁମେ ଶାଶ୍ୱତ ଶିବମାନଙ୍କର (ଜନତା) ପତିରାଜା ଅଟ ।—ଏହା ତିରଶ୍ଚି ଆଂଗିରସଙ୍କ ସୂକ୍ତ (୭।୮।୮)ରେ ଉଲ୍ଲେଖ ଅଛି ।

### ଶାସନ-ଯନ୍ତ୍ର

ଋଗ୍‌ବେଦରେ ଗଣ-ପତି ଶବ୍ଦରୁ 'ଗଣ'ର ସଙ୍କେତ ମିଳେ । ଋଗ୍ ବେଦରେ ଶାସନ-ଯନ୍ତ୍ରର ବ୍ୟବସ୍ଥା—ସଭା, ସମିତି, ବ୍ରାଜପତି,

---

* ଅଥେନ୍ଦ୍ରଦେବ ପ୍ର ଶରଚେ ମହ୍ୱିଙ୍ଗ ଦବସ୍ତୁ ଥିବ୍ୟା ପର୍ଯ୍ୟନ୍ତରକ୍ଷାତ୍ । ସ୍ୱରାଡ଼ିନ୍ଦ୍ରୋ ଦମ ଆ ବିଶ୍ୱଗୂର୍ତ୍ତଃ ସ୍ୱରିରମତ୍ରୋ ବବକ୍ଷେ ରଣାୟ ।୪। (—ନୋଧାଗୌତମ-ସୂକ୍ତ, ୧।୬୧)

କୁଳପ, ପୁରୋହିତ ( ପ୍ରଧାନମନ୍ତ୍ରୀ ) ମଧ୍ୟରେ ସୀମିତ ଥିବା ଜଣାଯାଏ ।

## ସଭା

ସଭା ଓ ସମିତିର ଉଲ୍ଲେଖ ଋଗ୍‌ବେଦର କେତେକ ସ୍ଥାନରେ ଦେଖାଯାଏ । ସଭାର ଅର୍ଥ ବ୍ୟାପକ ଥିଲା । ସେଥିରେ ବର୍ତ୍ତମାନର ରାଜନୈତିକ ଗ୍ରାମ, ରାଷ୍ଟ୍ର, ଜନ—ସଭାମାନଙ୍କରେ ସାମିଲ ହୋଇ ନ ଥିଲା ।

ଜୁଆ ଖେଳିବା ସଭା ଅର୍ଥରେ ପ୍ରଯୁକ୍ତ ହୋଇଛି । କବଷଙ୍କ * ସୂକ୍ତରୁ ଏହା ସ୍ପଷ୍ଟ ଏଥିପାଇଁ ଜୁଆଶାଳାର ଅଧ୍ୟକ୍ଷଙ୍କୁ ସଭିକ କୁହାଯାଉଥିଲା ।

ଭରଦ୍ୱାଜ ମଧ୍ୟ ଗାଈଙ୍କ ପ୍ରଶଂସା କରି ସଭାର ଉଲ୍ଲେଖ କରିଛନ୍ତି § ।

## ସମିତି

ସମିତି ହେଉଛି ୟୁରୋପୀୟ ଭାଷାରେ କମିଟି (Committee) । ଶତମ୍ ଓ କେଣ୍ଟୁମ ଦୁଇ ଭାଷାଗୋଷ୍ଠୀର ପ୍ରଭେଦ ଏହିଥିରୁ ସ୍ପଷ୍ଟ ପ୍ରକଟିତ । ଶତମ ର 'ସ' କେଣ୍ଟୁମରେ 'କ'ରେ ପରିଣତ ହୋଇଯାଏ ।

---

* ସଭାମେତି କିତବଃ ପୃଚ୍ଛମାନୋ "ଜେଷ୍ୟାମୀତି" ତନ୍ୱା ଶୁଶୁଜାନଃ
ଅକ୍ଷାସୋ ଅସ୍ୟ ବିତିରନ୍ତି କାମଂ ପ୍ରତିଦୀବ୍ନେ ଦଧତ ଆ କୃତାନି ।୬।
(—କବଷ, ୧୦।୩୪)

§ ଯୂୟଂ ଗାବୋ ମେଦୟଥା କୃଶଂ ଚିଦଶ୍ରୀରଂ ଚିତ୍ କୃଣୁଥା ସୁପ୍ରତୀକଂ ।
ଭଦ୍ରଂ ଗୃହଂ କୃଣୁଥ ଭଦ୍ରବାଚୋ ବୃହଦ୍‌ବୋ ବୟ ଉଚ୍ୟତେ ସଭାସୁ ।୬।
(—ଭରଦ୍ୱାଜ, ୬।୨୮)

ଏବେ ସମିତି ବା କମିଟି ଗ୍ରେଟ ସଭା କମ୍ବା ସଂସଦ ଅର୍ଥରେ ବ୍ୟବହୃତ ହେଉଛି । କିନ୍ତୁ ଋଗ୍‌ବୈଦିକ କାଳରେ ଏହା ରାଜସଭା, ରାଷ୍ଟ୍ରର ବଡ଼ ସଭା ଅଥବା ସଂସଦକୁ ବୁଝାଯାଉଥିଲା । ମହର୍ଷି-ପୁତ୍ର କଶ୍ୟପଙ୍କର ସୂକ୍ତ (୧୦।୯୭।୬)ରୁ ଏହା ଜଣାଯାଏ । ଏହା ବ୍ୟତୀତ ସମିତିର ଅର୍ଥ ଯୁଦ୍ଧକ୍ଷେତ୍ର ମଧ୍ୟ ହେଉଥିଲା । ସଂବଦନ ଋଷି ସମିତିର ଉଲ୍ଲେଖ ମନ୍ତ୍ର ସମ୍ବନ୍ଧରେ କରିଛନ୍ତି—"ତୁମମାନଙ୍କ ମନ୍ତ୍ର ସହିତ, ସମିତି ଏକ ହେଉ * ।"

## —ବ୍ରାଜପତି, କୁଳପ—

ରାଜ-ବ୍ୟବସ୍ଥାରେ ପ୍ରଶାସନ ଲାଗି କୁଳପତି, ବ୍ରଜପତି, ଗ୍ରାମଣୀ, ଗଣପତି ଓ ଶେଷରେ ସମିତି ତଥା ଏହାର ପ୍ରଧାନ ଥିଲେ ରାଜା । 'ବିଶ'ଙ୍କୁ 'ବଳିହୃତ' ( କରଦେବାବାଲା ) ବୁଝାଯାଉଥିଲା । ସମ୍ଭବତଃ କର ନଗଦ ଅର୍ଥ ବା ହେପରି କୌଣସି ବସ୍ତୁ ମାଧ୍ୟମରେ ଦିଆଯାଉ ନ ଥିଲା, ଜିନିଷ ଆକାରରେ ଦିଆଯାଉଥିଲା । କର ଆଦାୟରେ କୁଳପତି, ବ୍ରଜପତି ସହାୟକ ଥିଲେ ।

ସୈନିକ-ପ୍ରଶାସନ କ୍ଷେତ୍ରରେ ରାଜା ଥିଲେ ସମସ୍ତଙ୍କ ଉପରେ ଅଧିକାରୀ । କିନ୍ତୁ ଆର୍ଜୁନେୟ କୁତ୍ସଙ୍କ ସାରଥି ଉପାଧି କେବଳ ରାଜାଙ୍କ ପରେ ସବୁଠାରୁ ବଡ଼ ସେନାପତିଙ୍କୁ ମିଳିଥିଲା ।

---

* ସମାନୋ ମନ୍ତ୍ରଃ ସମିତିଃ ସମାନୀ ସମାନଂ ମନଃ ସହଚିତ୍ତମେଷାଂ ।
ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ ସମାନେନ ବୋ ହବିଷା ଜୁହୋମି ।୩।
(—ସଂବନନ, ୧୦।୧୯୧)

ସେତେବେଳେ ଚତୁରଙ୍ଗ ସେନା ନ ଥିଲେ । ତ୍ରିରଙ୍ଗ ସେନା ଥିଲେ—ରଥ, ଘୋଡ଼ା ଓ ପଦାତିକ । ସେତେବେଳେ ହାତୀ-ସେନା ସୃଷ୍ଟି ହୋଇ ନ ଥିଲେ । ସପ୍ତସିନ୍ଧୁରେ ସିଂହ ନଥିଲେ, କିନ୍ତୁ ହାତୀଙ୍କ ସମ୍ପର୍କରେ ଋଗ୍‌ବେଦରେ କିଛି ହିଁ ଉଲ୍ଲେଖ ନାହିଁ କି ହାତୀ ପୋଷିବା କଥା ମଧ୍ୟ ନାହିଁ ।

## —ପୁରୋହିତ—

### ( ପ୍ରଧାନମନ୍ତ୍ରୀ )

ରାଜାଙ୍କ ପୁରୋହିତଙ୍କ କାମ କେବଳ ଯଜ୍ଞ ଓ ଧାର୍ମିକ କାର୍ଯ୍ୟରେ ସୀମିତ ନ ଥିଲା । ବଶିଷ୍ଠ ବଡ଼ ଅଭିମାନ ସହକାରେ କହିଛନ୍ତି—ବିତସୁ ଭରତ ଅନାଥ ଶିଶୁଙ୍କ ପରି ରହିଥିଲେ । ଯେତେବେଳେ ବଶିଷ୍ଠ ତାଙ୍କର ପୁରୋହିତ ହେଲେ, ସେତେବେଳେ ସେ ଶକ୍ତିଶାଳୀ ହୋଇଗଲେ ।

ପୁରୋହିତ ମଧ୍ୟ ମନ୍ତ୍ରଣାଦାତା ଥିଲେ । *

---

* ଏହି ଅଂଶର ସବିଶେଷ ଆଲୋଚନା ଲାଗି ରାହୁଲ ସାଂକୃତ୍ୟାୟନଙ୍କର 'ଋଗ୍‌ବୈଦିକ ଆର୍ଯ୍ୟ' ପୁସ୍ତକ ଦ୍ରଷ୍ଟବ୍ୟ । ଏଠାରେ ମଧ୍ୟ ସେହି ପୁସ୍ତକର ସାହାଯ୍ୟ ନିଆଯାଇଛି ।

# ଋଗ୍‌ବେଦର ପରବର୍ତ୍ତୀ ସମାଜ

ବାସ୍ତବ ସାମାଜିକ ଇତିହାସ ଅନୁଧ୍ୟାନ ବର୍ତ୍ତମାନ ବୈଜ୍ଞାନିକ ପଦ୍ଧତିରେ ବିଭିନ୍ନ ଦେଶରେ ଆରମ୍ଭ ହୋଇ ପୁଷ୍କଳ ହୋଇଉଠିଛି । କିନ୍ତୁ ଭାରତରେ ବାସ୍ତବ ସାମାଜିକ ଇତିହାସ ରଚନା ଓ ଆଲୋଚନାର ବାଧା ବ୍ରିଟିଶ ଶାସନରେ ହିଁ ସୃଷ୍ଟି ହୋଇଥିଲା । ବର୍ତ୍ତମାନ ବହୁ ପରିମାଣରେ ସେ ବାଧା ଦୂରୀଭୂତ ହୋଇଥିବାରୁ ଭାରତୀୟ ପଣ୍ଡିତ ତଥା ବିଜ୍ଞାମାନଙ୍କ ଭାରତର ଇତିହାସ ତଥା ସମାଜର ଗଠନପ୍ରଣାଳୀ ଓ ବିକାଶଧାରାକୁ ବାସ୍ତବ ଦୃଷ୍ଟି-କୋଣରୁ ଆଲୋଚନା କରୁଛନ୍ତି । ଆମର ଧର୍ମଗ୍ରନ୍ଥଗୁଡ଼ିକର ଏ ପର୍ଯ୍ୟନ୍ତ ବୈଜ୍ଞାନିକ ବିଶ୍ଳେଷଣ ହୋଇ ନାହିଁ । ତଥାକଥିତ ଶିକ୍ଷିତ ସମ୍ପ୍ରଦାୟ ମଧ୍ୟ ସେହି ମାନ୍ଧାତା ଅମଳର ଧ୍ୟାନଧାରଣାର ବଶବର୍ତ୍ତୀ ହୋଇ ଚାଲିଛନ୍ତି ।

ଭାରତର ସଂସ୍କୃତି ଏକ ବିସ୍ତୃତ ଓ ବହୁବ୍ୟାପକ ସଂସ୍କୃତି । ଆର୍ଯ୍ୟ ସଂସ୍କୃତିର ଜୀବନ-ଯାପନପ୍ରଣାଳୀ, ଧ୍ୟାନ ଧାରଣା ଯାହାକୁ ବିଶେଷ ଗୌରବ ଦିଆଯାଇଛି, ତାହା ନିର୍ଭେଜାଲ ଆର୍ଯ୍ୟ ସଂସ୍କୃତି ନୁହେଁ, ସେଥି ସହିତ ମିଶ୍ରିତ ହୋଇ ରହିଛି ହିନ୍ଦୁ ସଂସ୍କୃତି । ହିନ୍ଦୁ ସଂସ୍କୃତି ଅର୍ଥରେ ଗୁପ୍ତଯୁଗର ହିନ୍ଦୁ ଧର୍ମ କଥା ବୁଝିବା ଉଚିତ ନୁହେଁ । ତାହା ଆର୍ଯ୍ୟ-ପୂର୍ବ ସଂସ୍କୃତି—ସିନ୍ଧୁ-ସଭ୍ୟତାର ସଂସ୍କୃତି । ମହାଭାରତରେ ପ୍ରତିଫଳିତ ଭାରତୀୟ ଜୀବନ ଦୃଷ୍ଟିର ପ୍ରାୟ ସମସ୍ତ ବିଶେଷତା ହିଁ ଏହି ବୈଦିକ ଯୁଗର ଉଦ୍‌ଗମ । ଅବଶ୍ୟ ବୈଦିକ କାଳ ଅପେକ୍ଷାକୃତ ସରଳ ମନୋବୃତ୍ତିର ଯୁଗ ଥିଲା ।

ଜୀବନ ରକ୍ଷା ଓ ଜୀବନ ସମ୍ଭୋଗର ଦାୟରେ କୃଷି ଭିତ୍ତିକ ସମାଜ ଯେପରି ଭାବେ ବିକଶିତ ହୋଇଉଠିଲା, ସେଥିରେ ଋଗ୍‌ବୈଦିକ ପ୍ରବୃତ୍ତିସବୁ କ୍ରମଶଃ ଜଟିଳ ହୋଇ ସାମାଜିକ-ରାଜନୈତିକ ସଂଘର୍ଷମୟ ଜୀବନର ଅଭିବ୍ୟକ୍ତି ପ୍ରାପ୍ତ ହୋଇ ଶୋଷଣ ଓ ପରସ୍ପରବିରୋଧୀ ରୂପ ଧାରଣ କଲା ।

ସେହିସବୁ ପରସ୍ପରବିରୋଧୀ ପ୍ରବୃତ୍ତି ଓ ତାହାର ପ୍ରତିନିଧିତ୍ୱ କରୁଥିବା ନରନାରୀମାନଙ୍କର ପ୍ରଶଂସା ବା ନିନ୍ଦା ବି ଉଲ୍ଲେଖ ହୋଇ ରହିଲା ।

ବୈଦିକ ଯୁଗରେ ଯେଉଁ ଜୀବନଦର୍ଶନ ଓ ପ୍ରବୃତ୍ତିସମୂହ ବୀଜରୂପେ ବେଦରେ ରହିଥିଲା, ତାହା ପରବର୍ତ୍ତୀ ରାମାୟଣ ଓ ମହାଭାରତର ଛନ୍ଦେ ଛନ୍ଦେ ଅଙ୍କୁରିତ ହୋଇଉଠିଛି ।

ସେହି ସାମାଜିକ ସଂଘର୍ଷ ଓ ସମନ୍ୱୟ, ଦ୍ୱନ୍ଦ୍ୱ ତଥା ନୂତନ ନୈତିକତା ଓ ଜୀବନଦର୍ଶନର ବହୁମୂଲ୍ୟ ସମ୍ଭାର ସୁନ୍ଦରଭାବେ ଏହି ଦୁଇ ମହାଗ୍ରନ୍ଥରେ ଗ୍ରଥିତ ହୋଇଛି ।

'ସମିତି' ଯେପରି ଋଗ୍‌ବେଦରେ ଜନସାଧାରଣଙ୍କ ସମିତିଭାବେ ପ୍ରତିଷ୍ଠିତ ଥିଲା, ମହାଭାରତରେ ବର୍ଣ୍ଣିତ ସଭା-ସମିତି ତାଠାରୁ ଭିନ୍ନ ଭାବରେ ଦେଖାଦେଲା । ମହାଭାରତରେ ଜନସାଧାରଣଙ୍କ ରାଜନୈତିକ ଅଧିକାରକୁ ପୂରାପୂରି ଅବଦମିତ କରି ରାଜଶକ୍ତିର ଚୂଡ଼ାନ୍ତ ବିକାଶ ମହାଭାରତର ଛନ୍ଦେ ଛନ୍ଦେ ପ୍ରକଟ ହୋଇଉଠିଛି । ଏହାର ସୂତ୍ରପାତ କିନ୍ତୁ ମହାଭାରତ ଯୁଗରେ ନୁହେଁ । ଋଗ୍‌ବେଦରେ ଏହାର ମୂଳ ନିହିତ ଅଛି । ଯୁଦ୍ଧ-ନାୟକ ଇନ୍ଦ୍ରଙ୍କ ବାଧାବନ୍ଧନ-ହୀନ ସ୍ୱୈରାଚାରୀ ଶକ୍ତିର ସ୍ତୁତିରେ ବୈଦିକ କବିଗଣ ମୁଖର ହୋଇ ଉଠିଛନ୍ତି ।

ତା ପରେ ପ୍ରାଚୀନ ଯୌଥ-ଜୀବନ ଋଗ୍‌ବୈଦିକ ଯୁଗରେ ଶେଷ ଆଡ଼କୁ ହିଁ ଭାଙ୍ଗି ଯାଇଛି । ସେହି ଯୌଥ-ଜୀବନର ଧ୍ୱଂସ-ସ୍ତୂପ ଉପରେ କ୍ଷାତ୍ର-ଶକ୍ତି ଶାସିତ ଓ ବ୍ରାହ୍ମଣ-ଶକ୍ତି ସମର୍ଥିତ ସୁସ୍ପଷ୍ଟ ଶ୍ରେଣୀସମାଜର ଆବିର୍ଭାବ ଘଟିଛି । ବେଦର ଅର୍ବାଚୀନ ସୂକ୍ତ-ଗୁଡ଼ିକରେ ଏହି କ୍ଷତ୍ରିୟ-ଶ୍ରେଣୀ ଶାସିତ ବୈଦିକ ସମାଜର ପରି-ଚୟ ସୁବିଦିତ । ବ୍ରାହ୍ମଣ-ସାହିତ୍ୟର ଐତରେୟ ବ୍ରାହ୍ମଣରେ ଏହିପରି ସମାଜର ରୂପ ପ୍ରକଟିତ । କିନ୍ତୁ ଋଗ୍‌ବେଦର ପ୍ରାଚୀନ ଅଂଶରେ ଜାତି ବିଭାଗ ବା ଶ୍ରେଣୀ ବିଭାଗର ଉଲ୍ଲେଖ ନାହିଁ । କେବଳ ୧୦ମ ମଣ୍ଡଳରେ ଏହାର ଆଭାସ ମିଳେ । ଏହି ମଣ୍ଡଳର 'ପୁରୁଷ-ସୂକ୍ତ' ଅର୍ବାଚୀନ ବୋଲି ଆଧୁନିକ ବେଦବିଦ୍‌ମାନେ କହନ୍ତି ।

ତେଣୁ ଆର୍ଯ୍ୟସମାଜର ପ୍ରାରମ୍ଭରେ ଦେଖାଯାଏ ଯୌଥ-ଜୀବନ ଓ ପରେ ଶ୍ରେଣୀ-ଶାସିତ ସମାଜର ଅଭ୍ୟୁଦୟ । ଏହି ଯୁଗ-ପରିବର୍ତ୍ତନ ମାସେ ବା ବର୍ଷକର ସମୟକାଳର ପରିସର ମଧ୍ୟରେ ବିକଶିତ ହୋଇ ନାହିଁ—ଏହା ସହସ୍ରାଧିକ ବର୍ଷର ବ୍ୟବଧାନରେ ସୃଷ୍ଟି ହୋଇଛି ଏବଂ ସେହି ଦୀର୍ଘ ସମୟର ପଟ୍ଟଭୂମିରେ ରଚିତ ସୁବିଶାଳ ବୈଦିକ ସାହିତ୍ୟରେ ସେହିସବୁ ବିବର୍ତ୍ତିତ ଚିନ୍ତା-ଚେତନାର ସଙ୍କେତ ସଂରକ୍ଷିତ ।

ବେଦରେ କେବଳ କାମନାର ହିଁ ପରିପ୍ରକାଶ । ସୂକ୍ତଗୁଡ଼ିକ କେବଳ କାମନାର ହିଁ ପରିପ୍ରକାଶ ଓ ସଫଳ କାମନାର ଗାନ, ଯାହାକୁ ଶୁଣି ଶୁଣି ମନେରଖି ଆସିଥିଲେ ଋଷିମାନେ ଲିଖିତ ହେବା ସମୟ ବେଳକୁ । ସେହି କାମନା ଏକାନ୍ତ ପାର୍ଥିବ—ଅନ୍ନର କାମନା, ପଶୁର କାମନା, ଧନର କାମନା, ବଳବୀର୍ଯ୍ୟର କାମନା, ସନ୍ତାନର କାମନା, ସ୍ୱର୍ଗପତ୍ତିର କାମନା । 'ମୋକ୍ଷ' କାମନା ଋଗ୍‌ବେଦରେ ଦେଖିବାକୁ ମିଳେ ନାହିଁ ।

ବୈଦିକ ସାହିତ୍ୟ ବୋଇଲେ ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦକୁ ବୁଝାଏ । କିନ୍ତୁ ଏହି ବେଦ-ପାଠର ସହାୟକ ଭାବରେ ଆଉ ଯେଉଁ ରଚନାର ସୃଷ୍ଟି ହୋଇଥିଲା, ସେ ସମସ୍ତଙ୍କୁ "ବେଦାଙ୍ଗ" କୁହାଯାଏ ।

ସେଗୁଡ଼ିକ ହେଲା—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ ।

ଏ ସମସ୍ତରେ ଯେଉଁ ବିଷୟବସ୍ତୁ ବର୍ଣ୍ଣିତ ହୋଇଛି, ସେଥିରେ 'ଋଗ୍‌ବେଦ'ଠାରୁ ଭିନ୍ନ ଓ କ୍ରମବିକଶିତ, ଦ୍ୱନ୍ଦ୍ୱ ଓ ବିରୋଧର ଶ୍ରେଣୀ-ସମାଜର ଲକ୍ଷଣଗୁଡ଼ିକ ସ୍ପଷ୍ଟ ହୋଇଉଠିଛି । ଏହି ପରିପ୍ରେକ୍ଷୀରେ ମହାଭାରତରେ ଫୁଟି ଉଠିଥିବା ଧ୍ୟାନ-ଧାରଣା, ମତ-ଅମତ, ଚିନ୍ତା-ଚେତନାର ବିସ୍ତୃତ ଆଲୋଚନାରୁ ମହାଭାରଣୀୟ ସଂସ୍କୃତିର ସ୍ୱରୂପ ନିର୍ଣ୍ଣୟ କରାଯାଉ ।

# ମହାଭାରତ

'ବ୍ୟାସଦେବଙ୍କ ରଚିତ ମହାଭାରତ ଗ୍ରନ୍ଥରେ ବର୍ଣ୍ଣିତ ମହାଭାରତ ଯୁଦ୍ଧ ଦୁଇଟି ସ୍ଥାନରେ ସମାଜକୁ କେନ୍ଦ୍ର କରି ସୃଷ୍ଟି ହୋଇଛି। ଗୋଟିଏ କୌରବମାନଙ୍କର, ଅନ୍ୟଟି ପାଣ୍ଡବମାନଙ୍କର। ସେହି ସମାଜ ବା ଜନପଦର ନାମ କୁରୁ, ପାଞ୍ଚାଳ—ଯେଉଁ ସମାଜ ଦୁଇଟିର ମୌଳିକ ସାମାଜିକ ଭିତ୍ତି ହେଉଛି ଗୋରୁ ଓ କୃଷି। ଏହି ସମାଜର ସାମାଜିକ ଓ ରାଜନୈତିକ ଘଟଣାବଳୀ, ଆଚାର-ବିଚାର, ନୀତି ନିୟମ, ବ୍ୟବହାର ଇତ୍ୟାଦିର ବର୍ଣ୍ଣନା ଏହି ମହାଗ୍ରନ୍ଥରୁ ହିଁ ମିଳେ।

## —ମହାଭାରତ ଗ୍ରନ୍ଥ—

ଉପାଖ୍ୟାନ ଭାଗ ସହିତ ମହାଭାରତ ଶ୍ଳୋକ ସଂଖ୍ୟା ଏକ ଲକ୍ଷ। ଉପାଖ୍ୟାନ ଭାଗ ବ୍ୟତୀତ ମହାଭାରତର ଶ୍ଳୋକ ସଂଖ୍ୟା ଚବିଶ ହଜାର। ମହାଭାରତର ସଂକ୍ଷିପ୍ତ ବୃତ୍ତାନ୍ତ ବା ସୂଚୀ ଅନୁକ୍ରମଣିକାଧ୍ୟାୟରେ (ଆଦିପର୍ବ ୧ମ ଅଧ୍ୟାୟ) ଦଶ ଶହ ଶ୍ଳୋକରେ ବର୍ଣ୍ଣିତ ହୋଇଛି (୪୩)।

ଏହା ଅଷ୍ଟାଦଶ ପର୍ବରେ ବିଭକ୍ତ। ସେମାନଙ୍କ ନାମ ଯଥାକ୍ରମେ—ଆଦି, ସଭା, ବନ, ବିରାଟ, ଉଦ୍ୟୋଗ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ସୌପ୍ତିକ, ସ୍ତ୍ରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ଆଶ୍ରମବାସୀ, ମୁଷଳ, ମହାପ୍ରସ୍ଥାନିକ ଓ ସ୍ୱର୍ଗାରୋହଣ। ହରିବଂଶ ମହାଭାରତର ପରିଶିଷ୍ଟରୂପେ ସଂଯୋଜିତ ହୋଇଅଛି। ଶ୍ଳୋକ

ଯୋଗୁଁ ମହାଭାରତ ଶତସାହସ୍ରୀ ସଂହିତା ନାମରେ ମଧ୍ୟ ଅଭିହିତ ହୁଏ ।

ମହାଭାରତର ତିନୋଟି ସଂସ୍କରଣ ମିଳୁଅଛି । କଲିକତାରୁ ୧୮୩୪-୩୯ ମସିହାରେ, ବମ୍ବେରୁ ୧୮୬୨ରେ ଏବଂ ମାନ୍ଦ୍ରାଜରୁ ୧୮୫୫-୬୦ ମସିହାରେ—ଏପରି ତିନୋଟି ସଂସ୍କରଣ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଗୋଟିଏ ଶୁଦ୍ଧ ସଂସ୍କରଣ ଭଣ୍ଡାରକର ଓରିଏଣ୍ଟାଲ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ, ପୁନାରୁ ମୁଦ୍ରିତ ହୋଇଛି ।... ମହାଭାରତର ବିକାଶରେ ତିନୋଟି ସ୍ତର ସ୍ପଷ୍ଟ ଭାବରେ ଦେଖାଯାଏ । ପ୍ରଥମ ସ୍ତରରେ ମହାଭାରତର ଶ୍ଲୋକ ସଂଖ୍ୟା ୮୮୦୦ ଥିଲା । ଦ୍ଵିତୀୟ ଅବସ୍ଥାରେ ଏହାର ଶ୍ଲୋକ ସଂଖ୍ୟା ୨୪୦୦୦ ହେଲା । ସର୍ବଶେଷରେ ନାନା ପ୍ରକାର ଗାଥା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତିଙ୍କ ଉପାଖ୍ୟାନ, ଦର୍ଶନ, ଧର୍ମତତ୍ତ୍ୱ, ରାଜନୀତି ଇତ୍ୟାଦିର ଅବତାରଣା କରାଯିବାରୁ ଏହାର ଶ୍ଲୋକ ସଂଖ୍ୟା ଏକ ଲକ୍ଷରେ ପହଞ୍ଚିଲା । ଏପରି କୌଣସି ବିଷୟ ନାହିଁ ଯାହା କି ମହାଭାରତରେ ଆଲୋଚିତ ନ ହୋଇଛି । × × × ଭାରତୀୟ ମତାନୁସାରେ କୁରୁକ୍ଷେତ୍ର ଯୁଦ୍ଧ କଳିଯୁଗର ପ୍ରାରମ୍ଭରେ ଖ୍ରୀଃପୂଃ ୩୧୦୨ରେ ହୋଇଥିଲା । କିନ୍ତୁ ପାଶ୍ଚାତ୍ୟ ପଣ୍ଡିତମାନେ ଏହି ମତକୁ ଗ୍ରହଣ କରନ୍ତି ନାହିଁ । ପାର୍ଜିଟର ମହୋଦୟ ସକଳ ପୁରାଣ ଗ୍ରନ୍ଥ ଅନୁଶୀଳନ କରି ମହାଭାରତ ଯୁଦ୍ଧର ସମୟ ଖ୍ରୀଃପୂଃ ୯୫୦ ବୋଲି କହିଛନ୍ତି । ମହାଭାରତ ଯୁଦ୍ଧ ସମୟ ଯାହା ହେଉ ନା କାହିଁକି, ମହାଭାରତ ରଚନା ପ୍ରାୟ ଖ୍ରୀଃପୂଃ ପଞ୍ଚମ ବା ଚତୁର୍ଥ ଶତକରେ ହୋଇଥିଲା, ଏ ବିଷୟରେ ସନ୍ଦେହ ନାହିଁ । ଏ ବିଷୟରେ ବହୁ ପ୍ରମାଣ ମଧ୍ୟ ମିଳୁଅଛି । ପ୍ରଥମତଃ "ଆଶ୍ୱଳାୟନ ଗୃହ୍ୟ ସୂତ୍ର"ରେ (ସମୟ

ଖ୍ରୀ:ପୂ: ପଞ୍ଚମ ଶତକ) ମହାଭାରତର ଉଲ୍ଲେଖ ଅଛି । ବୈୟାକରଣ ପାଣିନି ମଧ୍ୟ "ଅଷ୍ଟାଧ୍ୟାୟୀ"ରେ ଭୀମ, ଯୁଧିଷ୍ଠିର, ବିଦୁର ଓ ମହାଭାରତ ଏଭଳି ନାମଗୁଡ଼ିକ ଉଲ୍ଲେଖ କରିଅଛନ୍ତି ।

ଖ୍ରୀଷ୍ଟୀୟ ପ୍ରଥମ ଶତକରେ ମହାକବି ଅଶ୍ୱଘୋଷ ସ୍ୱଲିଖିତ "ବଜ୍ରସୂଚୀ ଉପନିଷଦ"ରେ ହରିବଂଶ ସଂଯୁକ୍ତ ମହାଭାରତକୁ ଶତସାହସ୍ରୀ ସଂହିତା ବୋଲି ଉଲ୍ଲେଖ କରିଅଛନ୍ତି । ଅତଏବ ଖ୍ରୀଷ୍ଟଜନ୍ମ ପୂର୍ବରୁ ହିଁ ମହାଭାରତର ଶ୍ଳୋକ ସଂଖ୍ୟା ଏକ ଲକ୍ଷରେ ପହଞ୍ଚିଥିଲା । ଖ୍ରୀଷ୍ଟୀୟ ପଞ୍ଚମ ଶତକରୁ ଏକାଦଶ ଶତକ ପର୍ଯ୍ୟନ୍ତ ବହୁ ଶିଳାଲେଖ ଏବଂ ଗ୍ରନ୍ଥରେ ମହାଭାରତ ଶତସାହସ୍ରୀ ସଂହିତା ରୂପରେ ଉଲ୍ଲିଖିତ ହୋଇଅଛି । ସୁବନ୍ଧୁ, ବାଣ (ଷଷ୍ଠ ଓ ସପ୍ତମ ଖ୍ରୀଷ୍ଟାବ୍ଦ), ଶଙ୍କରାଚାର୍ଯ୍ୟ, କୁମାରିଲ ଭଟ୍ଟ (ଅଷ୍ଟମ ଖ୍ରୀଷ୍ଟାବ୍ଦ) ସମସ୍ତେ ସ୍ୱ ସ୍ୱ ରଚନାରେ ମହାଭାରତର ଉଲ୍ଲେଖ କରିଅଛନ୍ତି ଏବଂ ଉଦାହରଣ ମଧ୍ୟ ଦେଇଛନ୍ତି ।......

ମହାଭାରତ ଓ ରାମାୟଣ ଭାରତର ପ୍ରାଚୀନତମ ମହାକାବ୍ୟ ଓ ଇତିହାସ । ରାମାୟଣ ମହାଭାରତଠାରୁ ଆକାରରେ କ୍ଷୁଦ୍ର ଓ ପୂର୍ବବର୍ତ୍ତୀ ରଚନା । କାରଣ ମହାଭାରତରେ ରାମଙ୍କ କଥା ଉଲ୍ଲେଖ ଅଛି । ଯୁଧିଷ୍ଠିରଙ୍କୁ କୁହାଯାଇଛି—

"ତତୋଗଚ୍ଛେତ୍ ରାଜେନ୍ଦ୍ର, ଶୃଙ୍ଗବେର ପୁରଂ ମହତ୍
ଯତ୍ରଚୀର୍ଣ୍ଣୋ ମହାରାଜଃ ରାମୋ ଦାଶରଥିଃ ପୁରା
ତସ୍ମିନ୍ ତୀର୍ଥେ ମହାବାହୋ ସର୍ବପାପୈଃ ପ୍ରମୁଚ୍ୟତେ ।"

—ବନପର୍ବ

ରାମାୟଣରେ ମହାଭାରତ ବିଷୟରେ ଯାହା ଅଛି ତାହା ସମ୍ପୂର୍ଣ୍ଣରୂପେ ପ୍ରକ୍ଷିପ୍ତ ।

ଶ୍ରୀମଦ୍‌ଭଗବତଗୀତା ମହାଭାରତର ଅଂଶବିଶେଷ ।......
ଅନେକ ପଣ୍ଡିତଙ୍କ ମତରେ ଗୀତା ପରବର୍ତ୍ତୀ କାଳରେ ରଚିତ ଓ
ମହାଭାରତରେ ସଂଯୁକ୍ତ ହୋଇଅଛି ।

ମହାଭାରତର ଟୀକା ଦଶ ଜଣ ରଚନା କରିଅଛନ୍ତି ।
ଏମାନଙ୍କ ମଧ୍ୟରେ ନୀଳକଣ୍ଠ ଟୀକା ହିଁ ସର୍ବଶ୍ରେଷ୍ଠ । ନୀଳକଣ୍ଠ
ମହାରାଷ୍ଟ୍ରରେ ଷୋଡ଼ଶ ଶତକରେ ଟୀକା ରଚନା କରିଥିଲେ ।

ହରିବଂଶ ମହାଭାରତର ପରିଶିଷ୍ଟରୂପେ ସଂଯୋଜିତ
ହୋଇଅଛି । ହରିବଂଶରେ ଷୋଡ଼ଶ ସହସ୍ର ଶ୍ଳୋକ ଅଛି । ଏହା
ତିନୋଟି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ଶ୍ରୀକୃଷ୍ଣଙ୍କ ଜନ୍ମ ଏବଂ
ତାଙ୍କଠାରେ ବିଷ୍ଣୁଙ୍କର ଅବତାରତ୍ୱ ଆରୋପ କଥା ରହିଛି ।
ଦ୍ୱିତୀୟ ଭାଗରେ ଶ୍ରୀକୃଷ୍ଣଙ୍କ ଜୀବନବୃତ୍ତାନ୍ତ ଓ ତୃତୀୟ ଭାଗରେ
କଳିଯୁଗ ସମ୍ବନ୍ଧରେ ଭବିଷ୍ୟତ୍‌ବାଣୀ କରାଯାଇଛି (୪୪) ।

## ମହାଭାରତରେ ତିନୋଟି ସ୍ତର

ମହାଭାରତରେ ତିନୋଟି ସ୍ତର ଲକ୍ଷ୍ୟ କରାଯାଏ ।
ରଚନାକାଳର ଅନେକ ପୂର୍ବର ଘଟଣା ଓ ଉପାଖ୍ୟାନାଦି ଏଥିରେ
ସ୍ଥାନ ପାଇଛି—ରାମାୟଣର ବୃତ୍ତାନ୍ତ, ନଳୋପାଖ୍ୟାନ, ସାବିତ୍ରୀ
ଉପାଖ୍ୟାନ ଇତ୍ୟାଦି । ପ୍ରତ୍ୟେକ ପର୍ବରେ ହିଁ ପୁରାତନ ଅନେକ
ଇତିହାସ ଲିପିବଦ୍ଧ ରହିଅଛି । ବିଶେଷତଃ ଶାନ୍ତି ଓ ଅନୁଶାସନ
ପର୍ବରେ ଭୀଷ୍ମ-ଯୁଧିଷ୍ଠିରଙ୍କ ସମ୍ବାଦରେ ଅସଂଖ୍ୟ ପ୍ରାଚୀନ ଇତିହାସର
କଥା ଅଛି । ସେଇସବୁ ବର୍ଣ୍ଣନାକୁ ପ୍ରାକ୍-ମହାଭାରତୀୟ ସ୍ତରରୂପେ
ଗ୍ରହଣ କରାଯାଇପାରେ । ମହାଭାରତରେ ବର୍ଣ୍ଣିତ ପାଣ୍ଡବମାନଙ୍କ
ଚରିତ ଏବଂ ତାତ୍‌କାଳିକ ଅପରାପର ଇତିବୃତ୍ତକୁ ମହାଭାରତୀୟ

ସ୍ତରରୂପେ ଗ୍ରହଣ କରାଯାଇପାରେ । ମହାଭାରତ ରଚନା ପରେ
ଅର୍ଥାତ୍ କଳିଯୁଗରେ ଯେଉଁ ସକଳ ଆର୍ଯ୍ୟର ବ୍ୟବହାର ଗୃହୀତ,
ତାହାର ମଧ୍ୟ କଳ୍ପିତ ବର୍ଣ୍ଣନା ମାର୍କଣ୍ଡେୟ-ସମସ୍ୟା (ବନପର୍ବ)
ପ୍ରଭୃତିରେ ମିଳେ । ସେଇସବୁ ପ୍ରକରଣକୁ ପର-ମହାଭାରତୀୟ
ସ୍ତରରୂପେ ଗ୍ରହଣ କରାଯାଇପାରେ । ସୁତରାଂ ବୁଝିବାକୁ ହେବ,
ପ୍ରାକ୍-ମହାଭାରତୀୟ ସମାଜ ପାଞ୍ଚ ହଜାର ବର୍ଷର ପ୍ରାଚୀନ ଏବଂ ପର
ମହାଭାରତୀୟ ସମାଜ ମହାଭାରତ ରଚନାର ଦୁଇ ଶହ ଶତ ବର୍ଷ
ପରର । ଅର୍ଥାତ୍ ଆଜିଠାରୁ ସାଢ଼େ ଚାରି ହଜାର ବର୍ଷ ପୂର୍ବର ପ୍ରାୟ
ଏକହଜାର ବର୍ଷର ଭାରତ-ଇତିହାସ ମହାଭାରତ ବହନ କରିଅଛି ।
······ମୁଦ୍ରାଯନ୍ତ୍ର ପ୍ରଚଳନର ପୂର୍ବ ପର୍ଯ୍ୟନ୍ତ ନାନା କାରଣରୁ ମୂଳ
ପାଠର ପରିବର୍ତ୍ତନ ଓ ପରିବର୍ଦ୍ଧନ ଘଟିବା କୁହେଁ । ଦେଶ ଭେଦରେ,
ଲିପି ଭେଦରେ, ଲୁପ୍ତ ଓ ନଷ୍ଟ ସ୍ଥାନରେ ଆନୁମାନିକ ସଂଯୋଜନ, କଥକ
ଏବଂ ପାଠକ ମହାଶୟଗଣଙ୍କର ସ୍ୱରଚିତ ଶ୍ଳୋକର କ୍ଷୋଭ୍ରପନ ଓ
ସେମାନଙ୍କ ଲିଖିତ ପ୍ରାଚୀନ କମ୍ବଦନ୍ତୀ ସେମାନଙ୍କ ଲୋକାନ୍ତର ପରେ,
ଅପର ଲେଖକଙ୍କଦ୍ୱାରା ମୂଳ ଲେଖାରେ ସଂଯୋଜନ ଇତ୍ୟାଦି
କାରଣରୁ ନିଶ୍ଚୟ ହିଁ ଥିଲା । ଅନ୍ୟଥା ପାଠ ଭେଦ, ଅଧ୍ୟାୟ ଓ ଶ୍ଳୋକ
ସଂଖ୍ୟାର ଅସାମଞ୍ଜସ୍ୟ ଇତ୍ୟାଦି ଘଟିପାରି ନ ଥାନ୍ତା ।······

ମନୁଷ୍ୟର ସଙ୍ଗକୁ ସମାଜ କୁହାଯାଏ । ମହାଭାରତରେ
ମନୁଷ୍ୟକୁ ଖୁବ୍ ବଡ଼ ସ୍ଥାନ ଦିଆହୋଇଛି । ହଂସଗୀତାରେ
( ଶା ୨୯୯ତମ ଅଧ୍ୟାୟ) ଗୀତ ହୋଇଅଛି--

"ଗୁହ୍ୟଂ ବ୍ରହ୍ମ ତଦିଦଂ ବୋ ବ୍ରବୀମି,
ନ ମାନୁଷାଚ୍ଛ୍ରେଷ୍ଠତରଂ ହି କିଞ୍ଚିତ ।"

—ଗୁହ୍ୟ ଗୋଟିଏ ମହତ୍ ତତ୍ତ୍ୱ କହୁଅଛି, ମନୁଷ୍ୟଠାରୁ ଶ୍ରେଷ୍ଠତର ଆଉ କିଛି ହିଁ ନାହିଁ ।

ମହାଭାରତକାର ମନୁଷ୍ୟକୁ ମନୁଷ୍ୟରୂପେ ହିଁ ଦେଖିଛନ୍ତି, ଦେବତ୍ୱରେ ଉନ୍ନୀତ କରି ନାହାନ୍ତି । ପ୍ରାକୃତିକ ଓ ଅପ୍ରାକୃତିକ ବ୍ୟାପାରର ବିଚିତ୍ର ସମାବେଶରେ ମହାଭାରତ ସମୃଦ୍ଧ । ଦେବତା ଓ ମନୁଷ୍ୟର ଆତ୍ମୀୟତା, ଋଷିମାନଙ୍କ ତପସ୍ୟା ଓ ସାମୟିକ ସ୍ଖଳନ, ବର ଓ ଶାପ ପ୍ରଦାନ, ସ୍ତ୍ରୀ-ପୁରୁଷର ଅସଙ୍କୋଚ ମିଳନ, ଅସ୍ୱାଭାବିକ ଜନ୍ମବୃତ୍ତାନ୍ତ ପ୍ରଭୃତି ବହୁବିଧ ଘଟଣାର ବର୍ଣ୍ଣନାରେ ମହାଭାରତ ଯେପରି ମର୍ତ୍ତ୍ୟଲୋକର ଗ୍ରନ୍ଥ··· । ଏହାର ପାତ୍ରପାତ୍ରୀ-ମାନଙ୍କ ଜୀବନ୍ତ ଚରିତ୍ର ଯେପରି ବିଚିତ୍ର, ସାମାଜିକ ଆଚାର-ବ୍ୟବହାର ମଧ୍ୟ ସେହିପରି ବିଚିତ୍ର ।···ମହାକାଳର ନିର୍ବିକାର ସାକ୍ଷୀ ପରି ନିରାସକ୍ତ ଚିତ୍ତରେ ମହର୍ଷି ତାଙ୍କର ଏହି ଅପୂର୍ବ ରସସମୃଦ୍ଧ ସଂହିତା ରଚନା କରିଅଛନ୍ତି । ଶ୍ରୀକୃଷ୍ଣଙ୍କୁ ସାକ୍ଷାତ ଭଗବାନ ବୋଲି ପ୍ରକାଶ କରି ମଧ୍ୟ ମଝିରେ ମଝିରେ ତାଙ୍କ ଚରିତ୍ରରେ ମାନୁଷୀ ମାୟାର ଖେଳ ଲକ୍ଷ୍ୟ କରିଛନ୍ତି । ଏକମାତ୍ର ମହାମତି ବିଦୁରଙ୍କ ଚରିତ୍ର ବ୍ୟତୀତ ଆଉ ସମସ୍ତଙ୍କ ଚରିତ୍ରରେ ହିଁ ଦୁଇ ଚାରୋଟି ଦୁର୍ବଳତା ଫୁଟି ଉଠିଅଛି । ଭୀଷ୍ମ, ଦ୍ରୋଣ, ଗାନ୍ଧାରୀ, ଯୁଧିଷ୍ଠିର—କେହି ବାଦ ପଡ଼ି ନାହାନ୍ତି । ସରଳ ଭାଷାରେ ନିଜର ଜନ୍ମବୃତ୍ତାନ୍ତ ପ୍ରକାଶ କରିବାରେ ମଧ୍ୟ ସତ୍ୟସନ୍ଧ ଗ୍ରନ୍ଥକାର ମହର୍ଷିଙ୍କ କଣ୍ଠ କମ୍ପିତ ହୋଇ ନାହିଁ; ଅଥଚ ସେହି ଯୁଗରେ ମଧ୍ୟ ସମାଜରେ କାନୀନ-ପୁତ୍ରଙ୍କ ସ୍ଥାନ ଖୁବ୍ ଭଲ ନ ଥିଲା । ମହର୍ଷି କବିଙ୍କର ଏହି ଅପୂର୍ବ ସତ୍ୟନିଷ୍ଠା ମହାଭାରତର ସର୍ବତ୍ର ଲକ୍ଷ୍ୟ କରାଯାଏ (୪୫) ।

---

# ରାମାୟଣ

ରାମାୟଣକୁ ଚତୁର୍ବିଂଶତ ସାହସ୍ରୀ ସଂହିତା କହନ୍ତି, ଅର୍ଥାତ୍ ଏଥିରେ ୨୪୦୦୦ ଶ୍ଲୋକ ଅଛି । ଏହା ବାଳ, ଅଯୋଧ୍ୟା, ଅରଣ୍ୟ, କିଷ୍କିନ୍ଧ୍ୟା, ସୁନ୍ଦର, ଲଙ୍କା, ଉତ୍ତର —ଏହି ୭ଟି କାଣ୍ଡରେ ବିଭକ୍ତ । ଭାରତରେ ବିଭିନ୍ନ ପାଠସମ୍ବଳିତ ରାମାୟଣର ତିନୋଟି ସଂସ୍କରଣ ମିଳେ; ଯଥା—(କ) ଉତ୍ତର-ପଶ୍ଚିମୀ ସଂସ୍କରଣ, (ଖ) ପଶ୍ଚିମୀ ସଂସ୍କରଣ, ଏହା ଲାହୋରରେ ମୁଦ୍ରିତ ଏବଂ (ଗ) ବମ୍ବେ ସଂସ୍କରଣ । ବମ୍ବେ ସଂସ୍କରଣ ପୂର୍ବ-ପଶ୍ଚିମ ଭାରତରେ ବହୁଳ ଭାବରେ ପ୍ରଚଳିତ । ପ୍ରତ୍ୟେକ ସଂସ୍କରଣର ଏକ ତୃତୀୟାଂଶ ଶ୍ଲୋକ ଅନ୍ୟ ସଂସ୍କରଣ ସହିତ ମିଳେ ନାହିଁ । ପ୍ରତ୍ୟେକ ସଂସ୍କରଣରେ ଯେ କେବଳ ପାଠର ଭିନ୍ନତା ଏବଂ କେତେକ ଶ୍ଲୋକର ଅଭାବ ପରିଲକ୍ଷିତ ହୁଏ ତାହା ନୁହେଁ, ବରଂ କେତେକ ସର୍ଗର ଅଭାବ ପରିଲକ୍ଷିତ ହୁଏ ତଥା ଶ୍ଲୋକର କ୍ରମରେ ବ୍ୟତିକ୍ରମ ଦୃଷ୍ଟ ହୁଏ । ବମ୍ବେରେ ପ୍ରକାଶିତ ଦେବନାଗରୀ ସଂସ୍କରଣକୁ କେତେକ ପଣ୍ଡିତ ପ୍ରାଚୀନ ଓ ପ୍ରାମାଣିକ ବୋଲି ସ୍ୱୀକାର କରନ୍ତି । ଅନ୍ୟ ଦୁଇଟି ସଂସ୍କରଣରେ ଆର୍ଷ ଭାଷାର ବୈଷମ୍ୟ ଦୂର ହୋଇଅଛି । ଯେତେବେଳେ ଉପରୋକ୍ତ ତିନୋଟି ସଂସ୍କରଣ ଭାରତର ବିଭିନ୍ନ ଅଞ୍ଚଳରେ ନିଜ ନିଜର ପୂର୍ଣ୍ଣ ସ୍ୱରୂପ ଗ୍ରହଣ କଲା, ଠିକ୍ ସେତିକବେଳେ ପରମ୍ପରାଗତ ପାଠକମାନଙ୍କର ରାମାୟଣ ପଠନରୁ ହିଁ ଏହି ତିନୋଟି ସଂସ୍କରଣର ଭିନ୍ନତା ସୃଷ୍ଟି ହୋଇଛି ।...

## ସମୟ ନିରୂପଣ

ବାଲ୍ମୀକିଙ୍କ ରାମାୟଣ ମହାଭାରତଠାରୁ ପ୍ରାଚୀନ ବୋଲି ପ୍ରମାଣିତ ହୋଇଛି । କାରଣ ମହାଭାରତବର୍ଣ୍ଣିତ ବୀରମାନଙ୍କ ନାମ ରାମାୟଣରେ ଉଲ୍ଲିଖିତ ହୋଇ ନାହିଁ, ବରଂ ରାମଙ୍କ କଥା ମହାଭାରତରେ ବର୍ଣ୍ଣିତ ହୋଇଛି ଏବଂ ରାମାୟଣର ୬ଷ୍ଠ କାଣ୍ଡର ଦୁଇଟି ଶ୍ଲୋକ ମଧ୍ୟ ମୂଳ ମହାଭାରତର ୭ମ ପର୍ବରେ ବାଲ୍ମୀକିଙ୍କ ରଚନା ବୋଲି ଉଦ୍ଧୃତ ହୋଇଅଛି ।

ମହାଭାରତର ବନପର୍ବ ୨୭୭-୨୯୧ ସର୍ଗ ଭିତରେ "ରାମୋପାଖ୍ୟାନ"ର ବର୍ଣ୍ଣନା ମିଳେ, ଯାହା କି ରାମାୟଣର କଥାବସ୍ତୁ ଉପରେ ଅବଲମ୍ବିତ ବୋଲି ଜଣାପଡ଼େ । କାରଣ ସେହି ଆଖ୍ୟାନର ଅନେକ ଶ୍ଲୋକ ବାଲ୍ମୀକିଙ୍କ ରାମାୟଣର ଶ୍ଲୋକ ସହିତ ମିଳିଯାଏ; କିନ୍ତୁ ପ୍ରଫେସର ହପକିନ୍‌ଙ୍କ ମତରେ ରାମାୟଣ ହେଉଛି ଗୋଟିଏ ଉତ୍କୃଷ୍ଟ କଳାପ୍ରସୂତ କାବ୍ୟ । ତେଣୁ ତାହା ମହାଭାରତର ରଚନା ପରେ ରଚିତ ହେଲି ପରି ଜଣାପଡ଼େ । କିନ୍ତୁ ଉଇଣ୍ଟରନିଜ୍‌ଙ୍କ ମତରେ ମହାଭାରତର ପୂର୍ଣ୍ଣାଙ୍ଗ ସାଧିତ ହେବା ପୂର୍ବରୁ ସମଗ୍ର ରାମାୟଣ ରଚିତ ହୋଇ ସାରିଥିଲି ।...

## ରାମାୟଣରେ ମିଳୁଥିବା ଭାଷା ସମ୍ବନ୍ଧୀ ପ୍ରମାଣ

କାବ୍ୟର ଭାଷା ଓ ଶୈଳୀ ସରଳ ଓ ସାବଲୀଳ । ବୈୟାକରଣ ପାଣିନିଙ୍କ ସମୟର ଅର୍ଦ୍ଧ ଶତାବ୍ଦୀ ପରେ ପ୍ରାକୃତ ଓ ପାଲି ଜନସାଧାରଣଙ୍କର ଭାଷା ସ୍ୱରୂପ ଭାରତରେ ବ୍ୟବହୃତ ହେଉଥିଲି । ସେତେବେଳେ ରାମାୟଣ ରଚିତ ହୋଇ ନ ଥିଲି । ଖ୍ରୀ: ପୂ: ୫ମ

ଶତକରେ ବୁଦ୍ଧ ମଧ୍ୟ ତାଙ୍କର ଧର୍ମକୁ ସଂସ୍କୃତ ଭାଷାରେ ପ୍ରଚାର ନ କରି ପାଲି ଭାଷାରେ ବା ତଦାନୀନ୍ତନ କୌଣସି ପ୍ରାକୃତ ଭାଷାରେ ପ୍ରଚାର କରିଥିଲେ । ମ୍ୟାକ୍‌ଡ଼ନେଲଙ୍କ ମତରେ ରାମାୟଣ ପାଣିନିଙ୍କ ସମୟରେ କଦାପି ରଚିତ ହୋଇ ନାହିଁ । ଯଦି ପାଣିନିଙ୍କ ପରେ ରାମାୟଣ ରଚିତ ହୋଇଥାଏ, ତା'ହେଲେ ପାଣିନିଙ୍କ ବ୍ୟାକରଣର ପ୍ରଭାବରୁ ରାମାୟଣ କପରି ବଞ୍ଚିତ ହେଲା ? ତା'ହେଲେ ଲୋକ-ପ୍ରିୟ ସଂସ୍କୃତ ଭାଷା ବହୁତ ଆଗରୁ ପ୍ରଚଳିତ ହେଉଥିଲା । କିନ୍ତୁ ଉଦବେକ୍ରି ସିଦ୍ଧାନ୍ତି ବମ୍ବେରେ ପ୍ରକାଶିତ ରାମାୟଣରେ ତଥା ମହାଭାରତରେ ଥିବା ଆର୍ଷ ପ୍ରୟୋଗଦ୍ୱାରା ଖଣ୍ଡିତ ହୋଇଯାଇଛି । ବୈୟାକରଣଙ୍କଦ୍ୱାରା ଏହି ଆର୍ଷ ପ୍ରୟୋଗ ଲକ୍ଷିତ ହୋଇ ନାହିଁ । କାରଣ ପାଣିନି କେବଳ ଶିଷ୍ଟ ବା ଶୁଦ୍ଧ ଭାଷା ବ୍ୟବହାର କରିଛନ୍ତି, ଯାହା କି ଲୋକପ୍ରଚଳିତ ଭାଷାଠାରୁ ଖୁବ୍ ଉଚ୍ଚ ସ୍ତରରେ ଅଛି । ସେ ଆର୍ଷ ପ୍ରୟୋଗ ପ୍ରତି ଦୃଷ୍ଟି ଦେଇ ନାହାନ୍ତି ।

ସାଧାରଣ ଭାବରେ ଧରିଯିବ, ମୂଳ ରାମାୟଣ ଖ୍ରୀଃ ପୂଃ ୫ମ ଶତକ ପୂର୍ବରୁ ରଚିତ ହୋଇଅଛି । ଖ୍ରୀ: ପୂଃ ୨ୟ ଶତକ ପର୍ଯ୍ୟନ୍ତ ରାମାୟଣରେ ପ୍ରକ୍ଷିପ୍ତ ଅଂଶରେ ସଂଯୋଗ ହୋଇ ନ ଥିଲା ।

ପାଣିନିଙ୍କ ପୂର୍ବରୁ ଓ ଯେକୋବିଙ୍କ ଅନୁସାରେ ବୁଦ୍ଧଙ୍କ ପୂର୍ବରୁ ରାମାୟଣ ରଚିତ ହୋଇ ନ ଥିଲା ।—ଏହି ମତ-ଦୁଇଟିକୁ ଖଣ୍ଡନ କରିବାକୁ ଯାଇ ଉଇଣ୍ଟରନିକ୍ ଲେଖିଛନ୍ତି—ପ୍ରଚଳିତ ଲୋକଗୀତ ଉପରେ ନିର୍ଭର କରି ରାମାୟଣ ବାଲ୍ମୀକିଙ୍କଦ୍ୱାରା ସମ୍ଭବତଃ ଖ୍ରୀଃ ପୂଃ ୫ମ ଶତକରେ ରଚିତ ହୋଇଥିଲା । ଆଭ୍ୟନ୍ତର ପ୍ରମାଣ ବଳରେ ଦେଖିବାକୁ ଗଲେ ୫ମ କାଣ୍ଡର ୯—୧୧ ଭାଗରେ

ହନୁମାନ ରାବଣର ଅନ୍ତଃପୁର ଦେଖୁଥିବା ଦୃଶ୍ୟଟି ଅଶ୍ୱଘୋଷଙ୍କର ବୁଦ୍ଧ ଚରିତରୁ ଅନୁକୃତ ହେଲା ପରି ଜଣାପଡ଼େ । ସମ୍ଭବତଃ ଖ୍ରୀଃଅଃ ୨ୟ ଶତକ ଶେଷ ସୁଦ୍ଧା ରାମାୟଣ ପୂର୍ଣ୍ଣ ସ୍ୱରୂପ ଲାଭ କରିଅଛି ।

ରାମାୟଣ ପରବର୍ତ୍ତୀ ଅଳଙ୍କାରପୂର୍ଣ୍ଣ କୃତ୍ରିମ ସଂସ୍କୃତ କାବ୍ୟ-ସରଣୀକୁ ଆଲୋକ ପ୍ରଦାନ କରିଅଛି । ତେଣୁ କୃତ୍ରିମ କାବ୍ୟକର୍ତ୍ତା ଅର୍ଥାତ୍ ପରବର୍ତ୍ତୀ ମହାକବିମାନେ ବାଲ୍ମୀକିଙ୍କୁ ଆଦିକବିରୂପେ ଅଭିହିତ କରିଅଛନ୍ତି । ବାଲ୍ମୀକି ଉପମାଳଂକାର ଓ ଅନ୍ୟାନ୍ୟ ଅଳଙ୍କାରର ପ୍ରଭୂତ ବ୍ୟବହାର କରିଅଛନ୍ତି । ପ୍ରାମାଣିକ ରାମାୟଣର ୫ଟି କାଣ୍ଡ ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗ ଦଶରଥଙ୍କ ରାଜତ୍ୱ କାଳରେ ଅଯୋଧ୍ୟାରେ ଘଟିଥିବା ଘଟଣାବଳୀ ଓ ତାର ଫଳାଫଳ ବର୍ଣ୍ଣନା କରିଅଛି । ସେହି ଘଟଣାଗୁଡ଼ିକ ଅତି ପ୍ରାକୃତିକ, ମାନବିକ ଏବଂ ତାହା ଦୈବୀ ଶକ୍ତିର ପ୍ରଭାବରୁ ମୁକ୍ତ ଅଟେ । ଅତି ପ୍ରତିପତ୍ତିଶାଳୀ ରାଜା ହିସାବରେ ଇକ୍ଷ୍ୱାକୁ, ଦଶରଥ ଓ ରାମଙ୍କ ନାମ ଋଗ୍‌ବେଦରେ ମିଳେ । କିନ୍ତୁ ଋଗ୍‌ବେଦର ଏହି ରାଜାଙ୍କ ଭିତରୁ ଜଣଙ୍କର ଅନ୍ୟ ସହିତ କୌଣସି ପ୍ରକାର ସମ୍ପର୍କ ନ ଥିଲା । ଉପନିଷଦବର୍ଣ୍ଣିତ ଜନକ ଯେ ସୀତାଙ୍କର ପିତା ବିଦେହ-ରାଜା ଜନକ, ସେ ବିଷୟ ଏବେ ମଧ୍ୟ ଅମୀମାଂସିତ । ରାମାୟଣର ୨ୟ ଭାଗର ବିଷୟବସ୍ତୁ ସମ୍ପୂର୍ଣ୍ଣ ଭିନ୍ନ ଅଟେ । ୨ୟ ଭାଗ ଦେବୀ ଶକ୍ତିର ଲୀଳା ଓ ଅମାନୁଷିକ ବାତାବରଣରେ ପରିପୂର୍ଣ୍ଣ । ଲସେନ୍‌ଙ୍କ ମତରେ ରାମାୟଣ ଗୋଟିଏ ଗୂଢ଼ ଅର୍ଥ ପ୍ରକାଶନ ପାଇଁ ଉଦ୍ଦିଷ୍ଟ । ଆର୍ଯ୍ୟମାନେ ଅନାର୍ଯ୍ୟଙ୍କୁ ବିତାଡ଼ିତ କରି ଦାକ୍ଷିଣାତ୍ୟରେ ପ୍ରତିପତ୍ତି ବିସ୍ତାର କରିବାକୁ ଚେଷ୍ଟା କରିଥିଲେ । ରାମାୟଣରେ ଏହି ଅର୍ଥଟି ପ୍ରଚ୍ଛନ୍ନ ଭାବରେ ରହିଅଛି । କିନ୍ତୁ ରାମାୟଣ ଯୁଗରେ ଦାକ୍ଷିଣାତ୍ୟରେ

ଅର୍ଯ୍ୟ ରାଜତ୍ବ କଥା କହିଥାଉ ଅଟେ ଏବଂ ଉକ୍ତ ଗୂଢ଼ ଅର୍ଥ ରାମାୟଣରୁ ପ୍ରତିପନ୍ନମାନ ହୁଏ ନାହିଁ ।

ବେବର ମଧ ଦାକ୍ଷିଣାତ୍ୟରେ ଓ ଲଙ୍କାରେ ଆର୍ଯ୍ୟ ସଭ୍ୟତାର ପ୍ରସାର ପାଇଁ ରାମାୟଣ ଉଦ୍ଦିଷ୍ଟ ବୋଲି କହିଅଛନ୍ତି । କିନ୍ତୁ ଏହି ଗୂଢ଼ ଅର୍ଥର ପରିକଳ୍ପନା ରାମାୟଣବର୍ଣ୍ଣିତ ରାମଙ୍କର ଦିଗ୍‌ବିଜୟଦ୍ୱାରା ପ୍ରମାଣିତ ହେଉ ନାହିଁ । ରାମଙ୍କର ଦିଗ୍‌ବିଜୟ-ଦ୍ୱାରା ଦାକ୍ଷିଣାତ୍ୟ ସଭ୍ୟତାର କୌଣସି ଉନ୍ନତି ଘଟି ନାହିଁ । ବାଲ୍ମୀକି ଦାକ୍ଷିଣାତ୍ୟ ବିଷୟରେ ଅନଭିଜ୍ଞ ଥିଲେ । ଦାକ୍ଷିଣାତ୍ୟରେ କେତେକ ବ୍ରାହ୍ମଣ ଆଶ୍ରମ ଥିଲା ଏବଂ ତାହା ହିଂସ୍ରଜନ୍ତୁସଙ୍କୁଳ ଥିଲା—ଏହା ହିଁ ବାଲ୍ମୀକିଙ୍କୁ ଜଣା ଥିଲା ।

ଯେକୋବି ( Jacabi )ଙ୍କ ମତରେ ରାମାୟଣ ଭାରତୀୟ ପ୍ରାଚୀନ ଆଖ୍ୟାନ ଉପରେ ରଚିତ ହୋଇଅଛି । ରାମାୟଣର ଦ୍ୱିତୀୟ ଭାଗ ବୈଦିକ ଆଖ୍ୟାନର ଆଧାର ଉପରେ ଲିଖିତ ହୋଇଅଛି । ସୀତା ଲଙ୍ଗଳକର୍ଷିତ ଭୂମିରୁ ବାହାରିଥିବା କଥା ବେଦରେ ବର୍ଣ୍ଣିତ ହୋଇଅଛି ଏବଂ ସୀତା ବେଦରେ ଦେବୀ ରୂପରେ ସ୍ତୁତ ହୋଇଅଛନ୍ତି । ଗୃହ୍ୟ ସୂତ୍ରର କେତେକ ଅଂଶରେ ସୀତା ଲଙ୍ଗଳକର୍ଷିତ ଭୂମିର ଅଧିଦେବତା ହେବା କଥା ଉଲ୍ଲେଖ ଅଛି । ଆହୁରି ମଧ ସୀତା ପଦ୍ମାସନା, ପଦ୍ମବିଭୂଷିତା, କୃଷ୍ଣନୟନା, ସର୍ବାଙ୍ଗସୁନ୍ଦରୀ ଇତ୍ୟାଦି ପ୍ରକାରରେ ପ୍ରଶଂସିତ ହୋଇଅଛନ୍ତି । ରାମାୟଣରେ ବାଳକାଣ୍ଡ ଓ ଉତ୍ତରକାଣ୍ଡରେ ସୀତା ପୃଥିବୀରୁ ବାହାରି ପୃଥିବୀରେ ଲୀନ ହେବାର କଥା କୁହାଯାଇଛି । ରାମାୟଣରେ ବର୍ଣ୍ଣିତ ସୀତାଙ୍କର ସ୍ୱାମୀ ରାମଚନ୍ଦ୍ର, ବେଦବର୍ଣ୍ଣିତ ଇନ୍ଦ୍ରଙ୍କ ବ୍ୟତୀତ ଆଉ

ଟିକନ୍ତି ନୁହନ୍ତି । ରାମ-ରାବଣ ଯୁଦ୍ଧ ବେଦବର୍ଣ୍ଣିତ ଇନ୍ଦ୍ର-ବୃତ୍ର ଯୁଦ୍ଧର ନାମାନ୍ତର ମାତ୍ର । ରାବଣର ପୁତ୍ର ଇନ୍ଦ୍ରଜିତ ଋଗ୍‌ବେଦ ବୃତ୍ରର ବିଶେଷଣ ମାତ୍ର । ସୀତା ହରଣ ଉପାଖ୍ୟାନ ଓ ରାମଙ୍କ କୃତ ସୀତା ଉଦ୍ଧାର ଘଟଣାଟି ବେଦରୁ ଉଦ୍ଧୃତ । ବେଦରେ ମରୁଦ୍‌ଗଣ ଇନ୍ଦ୍ରଙ୍କୁ ସାହାଯ୍ୟ କରିଥିବାର ବର୍ଣ୍ଣନା ମିଳେ । ରାମାୟଣରେ ପବନନନ୍ଦନ ହନୁମାନ ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିଥିବାର ବର୍ଣ୍ଣନା ମିଳେ । ଇନ୍ଦ୍ରଙ୍କର ଗାଈମାନଙ୍କୁ ପାଣି ଯେତେବେଳେ ଗୋପନରେ ରଖିଥିଲେ, ଇନ୍ଦ୍ର ସେତେବେଳେ ସରମା ନାମକ କୁକ୍‌କୁରୀକୁ ଗାଈ ଉଦ୍ଧାର ନିମିତ୍ତ ଦୂତୀ କରି ପଠାଇଥିଲେ ଏବଂ ସେହି ସରମା ପୃଥିବୀର ଜଳରାଶିକୁ ଅତିକ୍ରମ କରି ପାଣିଙ୍କ ନିକଟରେ ପହଞ୍ଚିଥିଲା । ସୀତା ଅଶୋକ ବନରେ ଥିଲାବେଳେ ରାମଚନ୍ଦ୍ର ହନୁମାନଙ୍କୁ ଦୂତରୂପେ ସୀତାଙ୍କ ନିକଟକୁ ପଠାଇଥିଲେ । ତେଣୁ ଯେକୋବିଙ୍କ ମତରେ ବୈଦିକ ଆଖ୍ୟାନର ଆଧାର ଉପରେ ରାମାୟଣ ରଚିତ ହୋଇଛି ।

ଉକ୍ତ ମତକୁ ଖଣ୍ଡନ କରିବାକୁ ଯାଇ ବେବର କହିଛନ୍ତି— ଯଜୁର୍ବେଦ ସହିତ ରାମାୟଣର ସାମାନ୍ୟ ସାମଞ୍ଜସ୍ୟ ଅଛି ସତ୍ୟ, କିନ୍ତୁ ରାମାୟଣବର୍ଣ୍ଣିତ ସୀତା ଆଖ୍ୟାନ ସହିତ ବୈଦିକ ଆଖ୍ୟାନର ବିଶେଷ ତାରତମ୍ୟ ଦେଖାଯାଏ ।

ରାମାୟଣରେ ବହୁତ ମନୋରଞ୍ଜକ ଶ୍ରେଷ୍ଠ ବଡ଼ ଆଖ୍ୟାନ ଦେଖାଯାଏ । ଶ୍ଳୋକର ଉତ୍ପତ୍ତି, ଋଷ୍ୟଶୃଙ୍ଗ କଥା, ବାମନାବତାର, ବୀର କାର୍ତ୍ତିକେୟଙ୍କ କଥା, ମୁନି କପିଳ କୋପାନଳରେ ଭସ୍ମୀଭୂତ ୬୦,୦୦୦ ସଗରପୁତ୍ରଙ୍କ କାହାଣୀ, ସ୍ୱର୍ଗରୁ ପୃଥିବୀକୁ ଗଙ୍ଗାଙ୍କର

ଆଗମନ କଥା, ଦେବ-ଦାନବକୃତ ସମୁଦ୍ର ମନ୍ଥନ ଆଖ୍ୟାନ, ବଶିଷ୍ଠ-ବିଶ୍ୱାମିତ୍ର ଆଖ୍ୟାନ ଏବଂ ପ୍ରାଚୀନ ଶୁନଃଶେଫ କଥା ମଧ୍ୟ ରାମାୟଣରେ ବର୍ଣ୍ଣିତ ହୋଇଛି । ପ୍ରତାପଶାଳୀ ରାଜା ବିଶ୍ୱାମିତ୍ର ବଶିଷ୍ଠଙ୍କ ଧେନୁ ହରଣ କଲେ । ତେଣୁ ଉଭୟଙ୍କ ଭିତରେ ଉପସ୍ଥିତ ହେଲା ଭୂମୁଳ କଳହ । ଫଳରେ ବିଶ୍ୱାମିତ୍ର ତପସ୍ୟାଚରଣ କଲେ । ଶେଷରେ ସେ ବ୍ରାହ୍ମଣତ୍ୱ ଲାଭ କଲେ ଏବଂ ତାଙ୍କର ପ୍ରତିଦ୍ୱନ୍ଦୀ ମୁନି ବଶିଷ୍ଠଙ୍କ ସହିତ ମିଳି ଯାଇଥିଲେ ।

ରାମାୟଣ ଗୋଟିଏ ଲୋକପ୍ରିୟ ତଥା ଅଳଙ୍କାରପୂର୍ଣ୍ଣ ମହାକାବ୍ୟ । ଏପର୍ଯ୍ୟନ୍ତ ଭାରତରେ କୌଣସି କାବ୍ୟ ରାମାୟଣ ପରି ଲୋକପ୍ରିୟତା ଅର୍ଜନ କରିପାରି ନାହିଁ । ରାମାୟଣ ଯୁଗ ଯୁଗ ଧରି ଜାତୀୟ ସାହିତ୍ୟ ଉପରେ ପ୍ରଭାବ ପକାଇ ଚାଲିଛି । ରାମାୟଣର ଅନ୍ତର୍ଗତ ପିତୃଭକ୍ତି, ଦାମ୍ପତ୍ୟ ପ୍ରେମ ଓ ଭ୍ରାତୃବାତ୍ସଲ୍ୟ ଆଦର୍ଶସ୍ଥାନୀୟ । ସେଥିରେ ଥିବା ଦୈବ ଓ ଅମାନୁଷିକ ଆଶ୍ଚର୍ଯ୍ୟ କାର୍ଯ୍ୟକଳାପ ଯେ କେବଳ ବାଲ୍ମୀକିଙ୍କର ସୃଷ୍ଟି ତାହା ନୁହେଁ, ତା ଭିତରୁ ଅନେକ ପ୍ରକ୍ଷିପ୍ତ ବୋଲି ଅନୁମାନ କରାଯାଏ । *......

ଏ ସମ୍ପର୍କରେ ରବୀନ୍ଦ୍ରନାଥ କହିଛନ୍ତି—"ରାମାୟଣ ରଚିତ ହେବା ପୂର୍ବରୁ ଦେଶରେ ରାମଚନ୍ଦ୍ରଙ୍କ ସମ୍ବନ୍ଧରେ......ଗୋଟାଏ ଲୋକଶ୍ରୁତି ନିଃସନ୍ଦେହରେ ହିଁ ପ୍ରଚଳିତ ଥିଲା ।......ରାମଚରିତ ସମ୍ବନ୍ଧରେ ଯେଉଁସବୁ ଆଦିମ ପୁରାଣ କଥା ଦେଶର ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଥିଲା, ଏବେ ସେଗୁଡ଼ିକୁ ଆଉ ଖୋଜିଲେ ମିଳେ

* ସଂସ୍କୃତ ସାହିତ୍ୟ ୧ମ ଖଣ୍ଡ—ଡଃ କୁଞ୍ଜବିହାରୀ ତ୍ରିପାଠୀ ।

ନାହିଁ । କିନ୍ତୁ ସେଗୁଡ଼ିକ ମଧ୍ୟରେ ରାମାୟଣର ଗୋଟାଏ ପୂର୍ବ ସୂଚନା ଯେ ବିସ୍ତୃତ ହୋଇଥିଲା, ସେଥିରେ କୌଣସି ସନ୍ଦେହ ନାହିଁ * ।”

ତେବେ, ସେ ଯାହାହେଉ, ରାମାୟଣ ଓ ମହାଭାରତର ଧ୍ୟାନଧାରଣା ଭାରତୀୟ ଜନଜୀବନ ଉପରେ ଯେ ଅସୀମ ପ୍ରଭାବ ପକାଇଛି, ତାହା ସର୍ବବାଦୀସମ୍ମତ । ତେଣୁ ସେହି ଦୁଇ ମହାକାବ୍ୟର ଜୀବନ-ଦୃଷ୍ଟିର ହିଁ ଆଲୋଚନା ଆବଶ୍ୟକ ।

* ସାହିତ୍ୟ ସୃଷ୍ଟି—ରବୀନ୍ଦ୍ରନାଥ, ସାହିତ୍ୟ (୧୯୦୭)

# ରାମାୟଣ-ମହାଭାରତରେ

## ସମାଜ-ଚିତ୍ର

ରାମାୟଣରେ ବୀର ରାମଚନ୍ଦ୍ର ଅଯୋଧ୍ୟାରୁ ନିର୍ବାସିତ ହୋଇ ବିନ୍ଧ୍ୟ ଅତିକ୍ରମ କରି ଲଙ୍କାକୁ ଯାଇଥିଲେ । ବାଟରେ ସେ କେତେ ତପସ୍ୱୀ ଓ ବଣରେ ବାସ କରୁଥିବା ଲୋକଙ୍କ ସଂପର୍କରେ ଆସିଥିଲେ । ସାମାଜିକ ବ୍ୟକ୍ତି ବା ଗୋଷ୍ଠୀ ହିସାବରେ ସେ ଯେଉଁମାନଙ୍କୁ ଭେଟି-ଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଦାସ, ନାଉରି, ବାନର । କିଷ୍କିନ୍ଧ୍ୟାରେ ସମ୍ମୁଖୀନ ହୋଇଥିଲେ ବାନର ଓ ରାକ୍ଷସମାନଙ୍କର । ଲଙ୍କାରେ ତ ଶେଷ ଲଢ଼େଇ ରାକ୍ଷସଙ୍କ ସହିତ କେବଳ ।

ଏମାନଙ୍କ ମଧ୍ୟରେ ପ୍ରଥମେ ଦାସ ଭାବରେ ଯେଉଁ ଚରିତ୍ର-ମାନଙ୍କୁ ଦେଖିବାକୁ ପାଉ, ସେମାନଙ୍କ ମଧ୍ୟରେ ଅଛନ୍ତି—ଗଙ୍ଗା ନଦୀର ଧୀବର, ଯାହାର ବ୍ୟବସାୟ ହେଉଛି ମାଛ ଧରିବା, ଫଳ ସଂଗ୍ରହକାରୀ, ଶିକାରୀ । ରାମ ଏମାନଙ୍କ ସହିତ ଅଳ୍ପ ସମୟ ଥିଲେ । ତେଣୁ ବୋଧହୁଏ ରାମାୟଣରେ ଏମାନଙ୍କ ସଂପର୍କରେ ବିଶେଷ କିଛି ଉଲ୍ଲେଖ ନାହିଁ ।

କିଷ୍କିନ୍ଧ୍ୟା ଓ ଲଙ୍କାରେ ରାମଙ୍କ ଅବସ୍ଥିତି ଦୀର୍ଘତର । ତେଣୁ ରାମାୟଣରେ ଏହି ଦୁଇ ସ୍ଥାନ ଓ ସମାଜର ବର୍ଣ୍ଣନା ସର୍ବାଧିକ । ଅଯୋଧ୍ୟା, କିଷ୍କିନ୍ଧ୍ୟା ଓ ଲଙ୍କା—ଏହି ତିନି ସ୍ଥାନର ସାମାଜିକ ଗୋଷ୍ଠୀ ସମ୍ପର୍କରେ ରାମାୟଣରେ ସବିଶେଷ ବିବରଣୀ ପ୍ରଦତ୍ତ ହୋଇଛି ।

ପ୍ରଥମେ ଅଯୋଧ୍ୟାର ସାମାଜିକ ଅବସ୍ଥା ଲକ୍ଷ୍ୟ କରାଯାଉ । ଏହି ସମାଜର ଉତ୍ପାଦନପ୍ରଣାଳୀ ମୁଖ୍ୟତଃ ଗୋରୁ ଓ କୃଷି-ଭିତ୍ତିକ । ଅଯୋଧ୍ୟା ନଗରର ଚତୁର୍ଦ୍ଦିଗରେ ଗ୍ରାମର ସମାହାର । ରାମ ରାଜ୍ୟ ତ୍ୟାଗ କଲାବେଳେ ଗ୍ରାମବାସୀମାନେ ତାଙ୍କୁ ବିଦାୟ ଦେବାକୁ ବାଟକୁ ଆସିଥିଲେ । ରାମଚନ୍ଦ୍ର ଗାଁ ପରେ ଗାଁ ପାର ହୋଇ ଯାଇଥିଲେ ।

ରାମ ତାଙ୍କ ରାଜ୍ୟର ଶେଷ ଗ୍ରାମଟିକୁ ଛାଡ଼ିବା ପରେ କୋଶଳରେ ପ୍ରବେଶ କଲେ, ଯାହା ଘୋର ଅରଣ୍ୟପୂର୍ଣ୍ଣ । କଦାଚିତ ମଣିଷ ଭେଟ ହେଉଥିଲେ । କେବଳ ସେ ନଦୀ ନିକଟରେ ଭେଟିଥିଲେ ନାଉରିକୁ । ରାମଚନ୍ଦ୍ର ଦଣ୍ଡକାରଣ୍ୟରେ ଅରଣ୍ୟରେ ଗଲାବେଳେ କେତେକ ଋଷିଙ୍କ ବ୍ୟତୀତ ଅନ୍ୟ କୌଣସି ସାମାଜିକ ଜନବସତି ଦେଖି ନ ଥିଲେ । କିଷ୍କିନ୍ଧ୍ୟାରେ ସେ ଯେଉଁ ସାମାଜିକ ଗୋଷ୍ଠୀଙ୍କୁ ଭେଟିଲେ, ସେମାନେ ହେଉଛନ୍ତି ରାଜ୍ୟରୁ ବିତାଡ଼ିତ ଦଳେ ବାନର । କିଷ୍କିନ୍ଧ୍ୟାର ଯେଉଁ ବର୍ଣ୍ଣନା ଦିଆଯାଇଛି, ସେଥିରୁ ଆମେ ଦେଖିବାକୁ ପାଉଁ—କିଷ୍କିନ୍ଧ୍ୟାର ବର୍ଣ୍ଣନା, ଅରଣ୍ୟର ବର୍ଣ୍ଣନା, ଗିରିସଙ୍କଟ ଓ ହ୍ରଦର ବର୍ଣ୍ଣନା । କୃଷିର ବର୍ଣ୍ଣନା ନାହିଁ । ତେଣୁ ସେଠାରେ ବାସ କରୁଥିବା ବାନର ଲୋକେ ଜୀବିକାନିର୍ବାହ ପାଇଁ ଫଳମୂଳ ସଂଗ୍ରହ ଓ ଶିକାର ଉପରେ ନିର୍ଭର କରୁଥିଲେ ।

କିଷ୍କିନ୍ଧ୍ୟା ଏକ ସମୃଦ୍ଧିଶାଳୀ ରାଜ୍ୟ ଥିବା କଥା ଯାହା ବର୍ଣ୍ଣନା କରାଯାଇଛି, ତାହା ଅତି-କଳ୍ପନା ବୋଲି ସ୍ପଷ୍ଟ ଜଣାଯାଏ । କାରଣ ଲକ୍ଷ୍ମଣ ସୁଗ୍ରୀବକୁ ଭେଟିଲେ ପୁଷ୍ପଶୋଭିତ ଉଦ୍ୟାନ ମଧ୍ୟରେ । ତା ପରେ ବାନରମାନେ ସୀତାଙ୍କ ସନ୍ଧାନ ଲାଗି ଗଲାବେଳେ ଫଳ ମୂଳ ସାଙ୍ଗରେ ଆଣିଲେ, ଯାହାକୁ ଥରେ ଖାଇଲେ ମାସକ ଲାଗି

ଲୋକଶୋଷ ହେଉ ନ ଥିଲା । ଫଳମୂଳ ସହିତ ସେମାନେ ମଦ୍ୟପାନ କରୁଥିଲେ । ସ୍ତ୍ରୀମାନେ ମଧ୍ୟ ଏହା ବ୍ୟବହାର କରୁଥିଲେ । ରାମ ଯେତେବେଳେ ନିଜର ରହଣି ପାଇଁ ନଗର ବାହାରେ ଏକ ଗୁମ୍ଫା ନିର୍ବାଚନ କଲେ ସେଠାରେ କେବଳ ମିଳୁଥିଲା ଫଳ, ପଦ୍ମ-ପୁଷ୍କର ଓ ସ୍ୱଚ୍ଛ ଜଳ ।

ତାପରେ ଯେତେବେଳେ ରାମ ସମୁଦ୍ର ପାର ହୋଇ ଲଙ୍କା ଦ୍ୱୀପରେ ପହଞ୍ଚିଲେ, ସେତେବେଳେ ସମ୍ମୁଖରେ ଦେଖିଲେ ଅରଣ୍ୟ —କେବଳ ସେହି ଅରଣ୍ୟ ମଧ୍ୟରେ ଏକ ଗିରିଶୀର୍ଷରେ ଲୁକ୍କାୟିତ ହୋଇ ରହିଥିଲା ଏକ 'ନଗର' । ନଗର ଆଉ ସମୁଦ୍ରକୂଳ ମଧ୍ୟସ୍ଥ ସ୍ଥାନ କେବଳ ଅରଣ୍ୟପୂର୍ଣ୍ଣ ଥିଲା । ଲଙ୍କାରେ କୌଣସି ଗ୍ରାମ ଥିବା କଥା ଉଲ୍ଲେଖ ନାହିଁ, କୃଷିର ସଙ୍କେତ ମଧ୍ୟ ନାହିଁ । ରାକ୍ଷସମାନଙ୍କର କେବଳ ମାଂସ, ଫଳ, ମୂଳ ଓ ମଦ ହେଉଛି ଖାଦ୍ୟ । ଲଙ୍କା ନଗରରେ ଯେଉଁ ଉଦ୍ୟାନର ବର୍ଣ୍ଣନା ଦିଆଯାଇଛି, ସେଥିରେ ବର୍ଷସାରା ପକ୍ୱଫଳ ମିଳେ । ମାଂସଭକ୍ଷଣରେ ବାଛବିଚାର ନାହିଁ । ଯେଉଁ ରାକ୍ଷସୀମାନେ ସୀତାଙ୍କୁ ଜଗିଥିଲେ ଅଶୋକ ବନରେ, ସେମାନେ ମାଂସଭକ୍ଷଣ ଓ ମଦ୍ୟପାନ କରୁଥିଲେ । କୁମ୍ଭକର୍ଣ୍ଣ ପାଇଁ ଆସୁଥିବା ଖାଦ୍ୟସାମଗ୍ରୀରେ ମୁଖ୍ୟ ଥିଲା ମାଂସ-ଦ୍ରବ୍ୟ । ଯେଉଁ ଶସ୍ୟ କଥା ଉଲ୍ଲେଖ ଅଛି, ତାହା ଅଦ୍ଭୁତ (Divine Origin) ବୋଲି କୁହାଯାଇଛି । କେବଳ ଘୃତ ଓ ଚାଉଳ କଥା ମାତ୍ର ଦୁଇଟି ସ୍ଥାନରେ ଉଲ୍ଲେଖ ଅଛି । ରାବଣର ତର୍ପଣ ବେଳେ 'ତିଳ'ର ଉଲ୍ଲେଖ ଅଛି । ବିଭୀଷଣର ରାଜ୍ୟାଭିଷେକ ବେଳେ ଘୃତ ଓ ଚାଉଳର ଉଲ୍ଲେଖ ଅଛି । ଏହା ଦୁଇଟି ଅଯୋଧ୍ୟା ନଗର-ସଭ୍ୟତାର ପ୍ରଭାବ ହୋଇପାରେ । କାରଣ ଅଯୋଧ୍ୟାର ଉତ୍ସବରେ

ଏହାର ବ୍ୟବହାର ଉଲ୍ଲେଖ ଅଛି । ଲଙ୍କାର ଲୋକେ ବା ରାକ୍ଷସମାନେ ମାଂସ, ଫଳାହାରୀ ଥିଲେ—ଏହା ସ୍ପଷ୍ଟ ।

କିନ୍ତୁ ଲଙ୍କା ଓ କିଷ୍କିନ୍ଧ୍ୟା-ଅଞ୍ଚଳର ବାସିନ୍ଦାମାନେ ସେତେବେଳେ ପଶୁପାଳନ, କୃଷି ଜାଣି ନ ଥିଲେ—ସେମାନେ ଶିକାର ଓ ଫଳମୂଳ ସଂଗ୍ରହ କରି ଜୀବନ ଧାରଣ କରୁଥିଲେ—ଏହା ରାମାୟଣରୁ ସ୍ପଷ୍ଟ ।

ଏହି ସାମାଜିକ ପରିସ୍ଥିତିରେ ଲଙ୍କା କମ୍ବା କିଷ୍କିନ୍ଧ୍ୟାରେ ଆମେ ଦାସତ୍ୱର ଚିହ୍ନ ଦେଖୁ ନାହୁଁ । କିନ୍ତୁ ଅଯୋଧ୍ୟାରେ କୈକେୟୀ କମ୍ବା ରାମଙ୍କ ଉପାଖ୍ୟାନ ମଧ୍ୟରେ ଆମେ ଦାସ ଦାସୀଙ୍କ ବର୍ଣ୍ଣନା ପାଉ । ଏପରି କି ରାବଣର ଲଙ୍କାରେ ଦାସ-ଦାସୀ ଥିବାର ଉଲ୍ଲେଖ ନାହିଁ ।

ଅଯୋଧ୍ୟା କେବଳ ଧନଧାନ୍ୟରେ ପୂର୍ଣ୍ଣ ଥିବା କଥା ରାମାୟଣରୁ ମିଳେ । ତେଣୁ କୃଷି-ସଭ୍ୟତା ସହିତ 'ଦାସ' ବ୍ୟବସ୍ଥାର ସମ୍ପର୍କ ଅନିବାର୍ଯ୍ୟ । କିନ୍ତୁ କବି ଯେଉଁ ପରିମାଣ ଉଲ୍ଲେଖ କରିଛନ୍ତି, ତାହା ଅତିରିକ୍ତ ଜଣାଯାଏ ।

ଲଙ୍କା ଓ କିଷ୍କିନ୍ଧ୍ୟା କ୍ଷେତ୍ରରେ ଏପରି ଅର୍ଥନୈତିକ ବା ସାମାଜିକ ପରିସ୍ଥିତି ଗଢ଼ି ଉଠି ନାହିଁ, ଯାହା ଦାସତ୍ୱ ପରି ଏକ ସଂସ୍ଥାକୁ ଜନ୍ମ ଦେବ । ଅଯୋଧ୍ୟାର ଲୋକେ କୃଷିନିର୍ଭର ଥିଲେ । ସେମାନଙ୍କର ଥିଲେ ଗୃହପାଳିତ ପଶୁ, ତେଣୁ ସେଠାରେ ଦାସତ୍ୱର ସମ୍ଭାବନା ସ୍ୱାଭାବିକ ।

## ରାମାୟଣ ଓ ମହାଭାରତର ସାମାଜିକ ସ୍ଥିତି

ରାମାୟଣର ଅଯୋଧ୍ୟା ପରି ମହାଭାରତର କୌରବ ଓ ପାଣ୍ଡବଙ୍କ ରାଜ୍ୟ ମଧ୍ୟ ପଶୁ ଓ କୃଷିଭିତ୍ତିକ ସମାଜ ଭାବରେ

ଉଲ୍ଲେଖନୀୟ । ରାମାୟଣ ଯୁଗର ସମାଜଠାରୁ ମହାଭାରତର ସମାଜ ବହୁ ବାଦ ପରର । ଏତେବେଳକୁ ଉତ୍ପାଦନ ବଢ଼ିଥିବା ସମ୍ଭବ । ଲୋକସଂଖ୍ୟା ବୃଦ୍ଧି ଯୋଗୁ ଗୃହପାଳିତ ପଶୁ, ଚାଷଜମିର ବୃଦ୍ଧି ଓ ଖାଦ୍ୟ ସଂଗ୍ରହ କରି ଭବିଷ୍ୟତ ଲାଗି ରଖିବାର ପ୍ରବୃତ୍ତି ନିଶ୍ଚୟ ବଢ଼ି ଉଠିଥିବ ।

ରାମାୟଣରେ ମଧ୍ୟଦେଶରେ ଅଯୋଧ୍ୟା ଓ ମିଥିଳା ପରି ଦୁଇଟି ମାତ୍ର ନଗର ନୁହେଁ, ମହାଭାରତର ନଗର ତାଠାରୁ ସଂଖ୍ୟାଧିକ ଓ ତାହା ଗ୍ରାମମାନଙ୍କଦ୍ୱାରା ବେଷ୍ଟିତ । କୃଷିକାର ଓ ପଶୁପାଳନ ସମାଜର ଲୋକଙ୍କୁ ଶାସନ କରିବା ପାଇଁ ବହୁ ରାଜ-ପରିବାରର ଆବିର୍ଭାବ ।

ରାମାୟଣର ଗାଙ୍ଗେୟ ଅଞ୍ଚଳ ଅରଣ୍ୟପୂର୍ଣ୍ଣ, ଜନବିରଳ; ମହାଭାରତର ଗାଙ୍ଗେୟ ଅଞ୍ଚଳ ଜନାକୀର୍ଣ୍ଣ, ଉର୍ବର । ରାମାୟଣରେ ଅଯୋଧ୍ୟା ଓ ମିଥିଳାର ଦୁଇଟି ରାଜ-ପରିବାରଙ୍କ ବର୍ଣ୍ଣନା; କିନ୍ତୁ ମହାଭାରତରେ ବହୁ ସଂଖ୍ୟକ ରାଜ-ପରିବାରଙ୍କ କଥା ଉଲ୍ଲିଖିତ । ଖାଣ୍ଡବ ବନ ଦହନକୁ ଯଦି କୃଷିର ଅଭିବୃଦ୍ଧି ଲାଗି କୃଷିକ୍ଷେତ୍ର ବୃଦ୍ଧିର ମାଧ୍ୟମ ବୋଲି ଧରାଯାଏ, ତାହେଲେ ରାମାୟଣର କୃଷିକ୍ଷେତ୍ର ଅପେକ୍ଷା ମହାଭାରତର କୃଷିକ୍ଷେତ୍ର ଏପରିଭାବେ ବର୍ଦ୍ଧିତ ହୋଇଥିଲା ବୋଲି କହିବାକୁ ହେବ ।

ଏହି ବର୍ଦ୍ଧିତ କୃଷିସମାଜରେ ଦାସତ୍ୱ-ବ୍ୟବସ୍ଥା ଦେଖାଦେବା ସମ୍ଭବ ।

# ମହାଭାରତରେ ଦାସତ୍ୱ

ଏହି ସମୟରେ ଦାସ ବା ଦାସୀ ସଂଗୃହୀତ ହେଉଥିଲେ ନିଜ ସମାଜ ମଧ୍ୟରୁ, ଯେପରି ବିଦୁରଙ୍କ ମା' ଓ ଅନ୍ୟ ପକ୍ଷରେ ଅରଣ୍ୟବାସୀ ଜାତି ଅସୁର କିମ୍ବା ପାର୍ବତ୍ୟାଞ୍ଚଳରେ ବାସକରୁଥିବା କିରାତଙ୍କ ମଧ୍ୟରୁ । ଏହି ଅରଣ୍ୟବାସୀ ଓ ପାର୍ବତ୍ୟାଞ୍ଚଳର ଅଧିବାସୀମାନେ କୃଷି କିମ୍ବା ଗୃହପାଳିତ ପଶୁ ରଖି ଗୁଜୁରାଣ ମେଣ୍ଟାଉ ନ ଥିଲେ ବୋଲି ବହୁ ପ୍ରମାଣ ମିଳେ । ଏହି ସମାଜ ଯେ ବ୍ରୋଞ୍ଜ-ଯୁଗର ସମାଜ—ଏହା ଏପର୍ଯ୍ୟନ୍ତ ମିଳୁଥିବା ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ହିଁ ଜଣାଯାଇଛି । ପ୍ରତ୍ନତାତ୍ତ୍ୱିକମାନଙ୍କ ମତରେ ଭାରତରେ ଲୌହଯୁଗର ଉଦ୍ଭବ ହେଲା ଖ୍ରୀ: ପୂ: ୧୦୦୦ ପରେ । ତେଣୁ ଏହି ଦୁଇ ମହାପୁରାଣ ଯୁଗରେ 'ଦାସତ୍ୱ' ପ୍ରଥା କେବେ ହେଲେ ଉତ୍ପାଦନ କ୍ଷେତ୍ରରେ ମୁଖ୍ୟ ଅଂଶ ଗ୍ରହଣ କରିପାରିବା କଥା ନୁହେଁ । କାରଣ ଲୌହଯୁଗର ସଭ୍ୟତା ହିଁ ଉତ୍ପାଦନ କ୍ଷେତ୍ରରେ ବିପ୍ଳବ ଆଣେ ଓ ଉତ୍ପାଦନ ବଳକାରେ ପରିଣତ ହେଲେ ଦାସ-ଯୁଗର ଆରମ୍ଭ ହେବା ପୃଥିବୀର ବିଭିନ୍ନ ଦେଶର ଇତିହାସରୁ ଜଣାଯାଏ । ତେଣୁ ଯେଉଁ ଦାସ-ଦାସୀଙ୍କ କଥା ମହାଭାରତରେ ବର୍ଣ୍ଣିତ ହୋଇଛି, ତାହା ମୂଳ ମହାଭାରତର ପ୍ରକ୍ଷିପ୍ତ ଅଂଶର ସଂଯୋଗରୁ ସମ୍ଭବ ବୋଲି ସିଦ୍ଧାନ୍ତରେ ପହଞ୍ଚିବାକୁ ହୁଏ ।

ତେବେ ମହାଭାରତରେ ମହାଭାରତର ପରବର୍ତ୍ତୀ ସମୟର ଚିତ୍ର ଦେଖିବାକୁ ମିଳୁଥିବାରୁ ସେଥିରେ ବର୍ଣ୍ଣିତ 'ଦାସତ୍ୱ'କୁ ଆଲୋଚନା କରିବା ଏହି ପରିସରରେ ସମୀଚୀନ ମନେ ହେଉନାହିଁ ।

## ଦାସତ୍ୱର ଆଖ୍ୟାନ

ମହାଭାରତରେ ଥିବା ବନତା, ଶର୍ମିଷ୍ଠା, ନଳ, ଦମୟନ୍ତୀଙ୍କ କଥା ପୌରାଣିକ । କିନ୍ତୁ ଅଗସ୍ତ୍ୟ ଓ ଲୋପାମୁଦ୍ରାଙ୍କ କଥା ବୈଦିକ ସାହିତ୍ୟରେ ମିଳେ । ଶୁନଃଶେପଙ୍କ କଥା ମଧ୍ୟ ବୈଦିକ ସାହିତ୍ୟରେ ରହିଛି । ତେଣୁ ଆମର ପୂର୍ବ ଆଲୋଚନାରେ ମହାଭାରତରେ ମିଳୁଥିବା ଘଟଣାବଳୀ ମହାଭାରତ ଯୁଦ୍ଧ-ପୂର୍ବ ଘଟଣାର ମିଶ୍ରଣ ରହିଥିବା କଥା ଦର୍ଶାଯାଇଛି । ତେଣୁ ଏହି ଆଖ୍ୟାନର ଆଲୋଚନା ଏ କ୍ଷେତ୍ରରେ ନ କରି ମହାଭାରତର ମୂଳ କଥା ମଧ୍ୟରୁ 'ଦାସତ୍ୱ'ର ସଙ୍କେତ ଦେଖିବା ଉଚିତ ହେବ ।

ମହାଭାରତର ବିଭିନ୍ନ ସ୍ଥାନରେ ଆମେ ଦାସ-ଦାସୀଙ୍କ କଥା ଦେଖୁ । କିନ୍ତୁ ଶ୍ରେଣୀ ହିସାବରେ 'ଦାସ-ଶ୍ରେଣୀ'ର କୌଣସି ସଙ୍କେତ ମିଳେ ନାହିଁ ।

ଏଠାରେ ଗୋଟିଏ କଥା କହିଦେବାର ଅଛି । ଋଗ୍‌ବେଦରେ 'କୃଷ୍ଣ-ଯୋନି' ବା କଳାବର୍ଣ୍ଣର ଲୋକଙ୍କୁ ନିନ୍ଦା କରାଯାଇଥିବା ଓ ସେମାନଙ୍କ ସହିତ ଆର୍ଯ୍ୟମାନଙ୍କର ସଂଘର୍ଷ ହୋଇଥିବା ପୂର୍ବର ଆଲୋଚନାରେ ଦର୍ଶାଯାଇଛି । କିନ୍ତୁ ରାମାୟଣ, ମହାଭାରତର ଦୁଇଟି ମୁଖ୍ୟ ଚରିତ୍ର ରାମ ଓ କୃଷ୍ଣ, ଯାହାଙ୍କର ବର୍ଣ୍ଣ କଳା । ସେମାନେ ସର୍ବୋତ୍କୃଷ୍ଟ ବା ପବିତ୍ର ଭାବରେ ଦେଖା ଦେଇଛନ୍ତି । ତେଣୁ ଏ କ୍ଷେତ୍ରରେ ବୈଦିକ 'ଦାସ ବା ଦସ୍ୟୁ'ର ପ୍ରଶ୍ନ ନାହିଁ । ଏ ଦୁଇ ମହାଗ୍ରନ୍ଥରେ ଯେଉଁ ଦାସର ବର୍ଣ୍ଣନା, ତାହା ବର୍ଣ୍ଣଭିତ୍ତିକ ନୁହେଁ; ଏଠାରେ ଦାସ ହେଉଛନ୍ତି ମାଲିକର ସମ୍ପୂର୍ଣ୍ଣ ଅଧୀନ—ସେ କୃଷ୍ଣ ବର୍ଣ୍ଣର ହେଉ ବା ଗୌର ବର୍ଣ୍ଣର ହେଉ ।

'ଶାନ୍ତି ପର୍ବ' ଅନୁସାରେ ଦାସ ବା ଦାସୀର ସଂଜ୍ଞା ହେଉଛି —ମାଲିକ ବା ପ୍ରଭୁର ସଂପୂର୍ଣ୍ଣ କର୍ତ୍ତୃତ୍ୱରେ ସ୍ୱାଧୀନତା ବିବର୍ଜିତ ବ୍ୟକ୍ତି ।

ସଂଜୟଙ୍କ କଥା ଅନୁଯାୟୀ ପାଣ୍ଡବମାନେ ଯେତେବେଳେ ଜୁଆ ଖେଳରେ ନିଜର ସ୍ୱାଧୀନତା ହରାଇ ବସିଲେ, ସେମାନେ ଦାସରେ ପରିଣତ ହେଲେ ଓ ନିଜର ସମସ୍ତ ଆକାଙ୍କ୍ଷାକୁ ମଧ୍ୟ ହରାଇଲେ । ଦାସର ସ୍ତ୍ରୀ ମଧ୍ୟ ଅଧୀନ ହେଉଥିଲା । କୁରୁସଭା ସ୍ଥଳରେ ଦ୍ରୌପଦୀଙ୍କ ନିବେଦନ ଓ ଦୁର୍ଯ୍ୟୋଧନ ପ୍ରଭୃତିଙ୍କ ପ୍ରତ୍ୟାଖ୍ୟାନ ଇତ୍ୟାଦି ଘଟଣାରୁ ଏହା ସ୍ପଷ୍ଟ । ଏପରି କି ଦାସର ସନ୍ତାନ ମଧ୍ୟ ଦାସ ରୂପରେ ଗଣ୍ୟ ହେଉଥିଲା ।

ଦାସ-ଭାବ, ଦାସ୍ୟ ଓ ଦାସତ୍ୱ—ଏହିସବୁ ଶବ୍ଦ ଦାସତ୍ୱ (Slavery) କୁ ସାଧାରଣ ଭାବେ ପ୍ରକାଶ କରିଥାଏ । 'ଦାସୀ-ଭାବ' କେବଳ ନାରୀର ଦାସତ୍ୱକୁ ବୁଝାଏ ନାହିଁ, ଏହା ମଧ୍ୟ ସାମାଜିକ ନିମ୍ନସ୍ତରର ନାରୀତ୍ୱକୁ ବୁଝାଇଥାଏ (୪୭) ।

ଦ୍ରୌପଦୀଙ୍କ କଥା ନିଆଯାଉ । ଯୁଧିଷ୍ଠିରଙ୍କ ପଣ ଯୋଗୁ ଦ୍ରୌପଦୀ ଦୁଃଶାସନଦ୍ୱାରା ସଭାସ୍ଥଳକୁ ଆନୀତ ହେଲେ । ସେତେବେଳେ ବିବାହିତା ନାରୀ ଓ ନାରୀର ସ୍ୱାଧୀନତା ସଂପର୍କରେ ଯେଉଁ କଥା ଦ୍ରୌପଦୀଙ୍କ ମୁଖରେ ଶୁଣାଯାଇଛି, ସେହିସବୁ ଅଧିକାରରୁ ବଞ୍ଚିତ ବୋଲି ପଣଜୟୀମାନେ କହିଛନ୍ତି । ସେମାନେ ଦ୍ରୌପଦୀଙ୍କୁ କହି-ଛନ୍ତି, ତୁମେ ଆଉ ସ୍ୱାମୀମାନଙ୍କ ସହିତ ସଂପୃକ୍ତ ନୁହଁ; କାରଣ ସ୍ୱାମୀ ତୁମକୁ ହରାଇଛନ୍ତି । ବର୍ତ୍ତମାନ ତୁମେ ସଧବା କି ବିଧବା, ସେଥିରେ କିଛି ଯାଏ ଆସେ ନାହିଁ । ଦାସୀକୁ ରକ୍ଷା କରିବାର

ଅସାମର୍ଥ୍ୟ ହିଁ ଏହାଦ୍ୱାରା ପ୍ରକଟିତ । ଅର୍ଥାତ୍ ତତ୍‌କାଳୀନ ସମାଜ ବା ପରବର୍ତ୍ତୀ ଦାସସମାଜର ଏହି ପରିଣତିର ସ୍ପଷ୍ଟ ଛବି ହିଁ ଏଥିରେ ପରିସ୍ଫୁଟ (୪୮) । ପାଣ୍ଡବମାନେ ଦ୍ରୌପଦୀଙ୍କ ପ୍ରତି ଏହି କଦର୍ଯ୍ୟ ବ୍ୟବହାର ଦେଖି କ୍ଷୁବ୍‌ଧ ହୋଇଛନ୍ତି ଏବଂ ଏପରି କି କୃଷ୍ଣ ମଧ୍ୟ ଦ୍ରୌପଦୀଙ୍କ ଇଚ୍ଛା ପୂରଣର ପ୍ରତିଶ୍ରୁତି ଦେଇଛନ୍ତି । ସେହି ଅତ୍ୟାଚାର କେବଳ ହିଁ ରକ୍ତପାତରେ ସମାଧାନ ହୋଇଛି । ସାଧାରଣ କ୍ଷେତ୍ରରେ କିନ୍ତୁ ଦାସ ପ୍ରଭୁର ହିଁ ଆଜ୍ଞାକର୍ତ୍ତା ହୋଇଅଛି । ମହାଭାରତରେ ବର୍ଣ୍ଣିତ କୌରବମାନେ ଦ୍ରୌପଦୀଙ୍କୁ ଦାସୀରୂପେ ଜ୍ଞାନ କରିବା କଥା ଯଦି ସମାଜର ସବୁ ସ୍ତରରେ ସତ୍ୟ ହୋଇଥାନ୍ତା, ତେବେ ଦ୍ରୌପଦୀ ସ୍ୱୟଂ ତ ତାହା ସାରବରେ ଗ୍ରହଣ କରିନେଇଥାନ୍ତେ ଓ ପ୍ରଭୁର ଅଧୀନ ପରି ଆଜ୍ଞା ପାଳନ କରିଥାନ୍ତେ । କିନ୍ତୁ ତାଙ୍କ ଉକ୍ତି ଓ ହରିବଂଶଙ୍କ ପ୍ରତ୍ୟୁକ୍ତିରୁ ଜଣାଯାଏ ଯେ ସେତେବେଳେ ମଧ୍ୟ ଦାସ ବା ଦାସୀ ପ୍ରତି କୌଣସି ସୁବିଚାର କମ୍ବା ବାରଣ ନ ଥିଲା । ସେତେବେଳେ ଦାସ ମଧ୍ୟ ଯେ କୌଣସି ବର୍ଣ୍ଣର ହୋଇ ପାରୁଥିଲେ । କେବଳ ଶୂଦ୍ର ଶ୍ରେଣୀରୁ ନୁହେଁ । ତେଣୁ ଶୂଦ୍ରମାନେ ମଧ୍ୟ କେବଳ ଦାସ ନ ଥିଲେ । ମହାଭାରତର ରଚୟିତା ଆର୍ଯ୍ୟମାନେ ମହାଭାରତର ଚାରି ବର୍ଣ୍ଣ ଯେ ଅଛୁଆଁ ନ ଥିଲେ, ସେ କଥାର ପ୍ରମାଣ ଦେଇଛନ୍ତି । କିନ୍ତୁ ପରେ ସେମାନେ 'ମ୍ଳେଚ୍ଛ' ଭାବରେ ଚିହ୍ନିତ ହୋଇଛନ୍ତି, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (୪୯) ।

## ଦାସ ବିଦୁର

ବିଦୁର ମହାଭାରତର ଏକ ଉତ୍ତମ ଚରିତ୍ର । ସେ ଜଣେ ଦାସୀ ମା'ଠାରୁ ଜନ୍ମ ହୋଇଥିବାରୁ ଦାସ ଭାବରେ ବ୍ୟବହୃତ । ଯଦି ପାଣ୍ଡବମାନେ ସେମାନଙ୍କ ଅଧିକାର ସାବ୍ୟସ୍ତ କରି ନ ଥାନ୍ତେ,

ତା'ହେଲେ ତାଙ୍କ ସନ୍ତାନ-ସନ୍ତତିମାନେ ଯେ ଦାସ ଭାବେ ବ୍ୟବହୃତ ହୋଇଥାନ୍ତି, ଏଥିରେ ସନ୍ଦେହ ନାହିଁ । କାରଣ ସେ ପଣରେ ହାରିଯାଇ ଦାସ ରୂପରେ ପରିଣତ ହୋଇଥିଲେ (୫୦) ।

ମହାଭାରତରେ 'କଣା-ଦାସ' କଥାର ଉଲ୍ଲେଖ ଅଛି । ଦରିଦ୍ର ବ୍ରାହ୍ମଣ ଅର୍ଥ ବଦଳରେ ନିଜର ପୁଅକୁ ବଳି ଦେବାକୁ ସ୍ଥିର କରିଛି । ଏହାର ପ୍ରମାଣ ଶୁନଃଶେପଙ୍କ କଥା । ଏହା ମଣିଷକୁ ବିକ୍ରି କରିଦେବାର ଉଦାହରଣ ।

ଯୁଦ୍ଧରେ ଜୟଦ୍ରଥ ଭୀମଙ୍କଦ୍ୱାରା ପରାଜିତ ହେବା ପରେ ମରଣ-ଭୟ ଦେଖାଇବାରେ ପାଣ୍ଡବମାନଙ୍କ ଦାସ ଭାବରେ ଜୟଦ୍ରଥ ନିଜକୁ ଘୋଷଣା କରିଥିଲେ । ତାଙ୍କ ବାଳକୁ ପାଞ୍ଚ ଭାଗରେ କଟା-ଯାଇଥିଲା । କାରଣ ଯୁଦ୍ଧଦାସଙ୍କ ପ୍ରତି ଏପରି କରିବା ବିଧାନ ଥିଲା ।

ତା'ପରେ ଆମେ ଦେଖୁ, ବ୍ରାହ୍ମଣଙ୍କୁ ଦାସ-ଦାସୀ ଉପହାର ଦେବା କଥା ରାମ, ଭରତ ଓ କର୍ଣ୍ଣ ପ୍ରମୁଖ ରାଜାଙ୍କ ପକ୍ଷରେ ସାଧାରଣ ଥିଲା । ରାଜାଙ୍କଦ୍ୱାରା ଯୌତୁକ ଭାବେ ଦାସ-ଦାସୀଙ୍କୁ ଦେବା କଥା ସର୍ବବିଦିତ । ଜନକ ସୀତାଙ୍କୁ ଓ ଦ୍ରୁପଦ ଦ୍ରୌପଦୀଙ୍କୁ ଯୌତୁକ ଦେଇଥିବା ଯୌତୁକ ମଧ୍ୟରେ ଦାସୀ ପ୍ରଦାନ କରିଥିବା କଥା ଉଲ୍ଲେଖଯୋଗ୍ୟ ।

ମହାଭାରତରେ 'ବନ୍ଧକୀ' କଥା ମଧ୍ୟ ରହିଛି । କର୍ଣ୍ଣଙ୍କ କଥାରୁ ଜଣାପଡ଼େ ଯେ ବନ୍ଧକୀରେ ମଧ୍ୟ ବନ୍ଧୁ ବ୍ୟକ୍ତିଙ୍କ ଅଧିକାର ରହିଥିଲା ।

ରାମାୟଣରେ 'ଦାସ-ଭାର୍ଯ୍ୟା' ଶବ୍ଦର ଉଲ୍ଲେଖ ଅଛି । ଯେତେବେଳେ ସୂର୍ପଣଖାକୁ ବିବାହ କରିବା ଲାଗି ଲକ୍ଷ୍ମଣ ପ୍ରତ୍ୟାଖ୍ୟାନ

କଲେ, ସେତେବେଳେ ସେ କହିଛନ୍ତି—"ତୁମେ କାହିଁକି ଜଣେ ଦାସର ଭାର୍ଯ୍ୟା ହେବାକୁ ଚାହୁଁଛ ? ମୁଁ ମୋ ଭାଇଙ୍କ ଦାସ ।" ଅର୍ଥାତ୍ ଜଣେ ସ୍ୱାଧୀନା ସ୍ତ୍ରୀ ଏଥିଦ୍ୱାରା ଦାସୀ ସ୍ତରକୁ ଖସିଆସିବା କଥା ଏଠାରେ କୁହାଯାଇଛି । 'ଜ୍ଞାତି-ଦାସୀ' ଙ୍କର ପ୍ରକୃଷ୍ଟ ଉଦାହରଣ ତ ହେଉଛି ମନ୍ଥରା । ମନ୍ଥରା କୈକେୟୀଙ୍କର ଯୌତୁକ-ଦାସୀ ।

'ଭୃତ୍ୟ'ର ବ୍ୟବହାର ଏଠି ଦୁଇଟି ଅର୍ଥରେ ବ୍ୟବହୃତ । ରାମାୟଣରେ ଜଣେ ନିଜର ଭରଣ ପୋଷଣ ପାଇଁ ଅନ୍ୟ ଉପରେ ନିର୍ଭର କରିବା ଅର୍ଥରେ ଏହା ବ୍ୟବହୃତ ହୋଇଛି ଏବଂ ଅନ୍ୟତ୍ର ଦଶରଥଙ୍କ ଭୃତ୍ୟ ସୁମନ୍ତ୍ର ମଜୁରି ବା ଦରମା ବିନିମୟରେ ରହିଥିବା ଅର୍ଥ ପ୍ରକାଶ କରୁଛି । ଅବଶ୍ୟ ଏ କ୍ଷେତ୍ରରେ ସୁମନ୍ତ୍ର ବଂଶାନୁକ୍ରମିକ ଭୃତ୍ୟ ଭାବରେ ପ୍ରତିଷ୍ଠିତ । ମହାଭାରତରେ ଭରଣ-ପୋଷଣ-ନିର୍ଭର ଭୃତ୍ୟର ମଧ୍ୟ ଉଲ୍ଲେଖ ରହିଛି ।

———

# ବୈଦିକ କାଳ ଓ ରାମାୟଣ-ମହାଭାରତରେ ସାଂସ୍କୃତିକ ଚିନ୍ତାଚେତନାର ସଂକେତ

ବୈଦିକ-ସାହିତ୍ୟରେ ଧନସମ୍ପତ୍ତି, ସନ୍ତାନ, ବିଶେଷତଃ ବୀର ପୁତ୍ର, ସ୍ୱାସ୍ଥ୍ୟ ଓ ଦୀର୍ଘାୟୁ, ଶତ୍ରୁ ଉପରେ ବିଜୟ ଲାଭ ଇତ୍ୟାଦି କାମନାର ଭୂରି ଭୂରି ଉଲ୍ଲେଖ ଦେଖାଯାଏ । ଏହିସବୁ ବସ୍ତୁ ପ୍ରାପ୍ତି ଦେବନିର୍ଭର ହୋଇଅଛି ଓ ସେମାନଙ୍କ ଅପ୍ରସନ୍ନତାର ଅଭାବ ମଧ୍ୟ ପ୍ରୟୋଜନୀୟ ହୋଇଉଠିଛି ।

ଋଗ୍‌ବେଦରେ ଏହିସବୁର ପ୍ରାପ୍ତି ଲାଗି ଇନ୍ଦ୍ରଙ୍କୁ ସ୍ତୁତି କରିବା ଦେଖାଯାଏ । ଯଜୁର୍ବେଦରେ ଶତ ବର୍ଷ ବଞ୍ଚିବା, ଶହେ ବର୍ଷ ପର୍ଯ୍ୟନ୍ତ ଦେଖିବା, ଶହେ ବର୍ଷ ପର୍ଯ୍ୟନ୍ତ ଶୁଣିବା ପାଇଁ ପ୍ରାର୍ଥନା କରାଯାଇଛି * ।

---

* ପଶ୍ୟେମ ଶରଦଃ ଶତଂ, ଜୀବେମ ଶରଦଃ ଶତଂ, ଶୃଣୁୟାମ ଶରଦଃ ଶତଂ, ପ୍ରବ୍ରବାମ ଶରଦଃ ଶତମଦୀନାଃ ସ୍ୟାମ ଶରଦ ଶତଂ, ଭୂୟଶ୍ଚ ଶରଦଃ ଶତାତ୍ ।—ଯଜୁର୍ବେଦ, ୩୬।୨୪

ଦେବୁ ନିଧନ ଓ ଘର ପୁତ୍ର ଲାଭ ପାଇଁ ପ୍ରାର୍ଥନା କରାଯାଇଛି (ଋଗ୍‌ବେଦ—୧।୧।୩) ।

ବୈଦିକ ଆର୍ଯ୍ୟଙ୍କ ମଧ୍ୟରେ ଅନୁକମ୍ପା, କ୍ଷମା ତଥା ଅହିଂସାର ଭାବନା ମିଳେ ନାହିଁ । କାରଣ ବୈଦିକ ଆର୍ଯ୍ୟଙ୍କ ଭାବନାରେ ଏହା ପ୍ରବେଶ ନ କରିବାର କାରଣ ହେଉଛି, ସେ ସମୟରେ ଜୀବନ ଧାରଣ ପାଇଁ ଯାହା ଆବଶ୍ୟକ, ସେମାନେ ଭୌତିକ ଶକ୍ତି ଓ ଯୁଦ୍ଧରୁ ହିଁ ଲାଭ କରୁଥିଲେ । ରୁଦ୍ରଙ୍କ ପ୍ରଶଂସା କରି କୁହାଯାଇଛି—"ରଥରେ ବସି ସେହି ପ୍ରସିଦ୍ଧ ରୁଦ୍ରଙ୍କ ସ୍ତୁତି କର, ଯିଏ ଶକ୍ତିଶାଳୀ ଅଟନ୍ତି ଓ ଭୟଙ୍କର ପଶୁ ପରି ମାରିପାରନ୍ତି * ।

ଗୋଟିଏ ମନ୍ତ୍ରରେ ବହୁ ପ୍ରକାର ପାପର ଉଲ୍ଲେଖ ଦେଖାଯାଏ । ବ୍ରହ୍ମହତ୍ୟା, ମଦ୍ୟପାନ, ଚୋରି, ଗୁରୁପତ୍ନୀ-ଗମନ, ପୁନଃ ପୁନଃ ପାପାଚରଣ, ପାପ କରି ନ କହିବା ଇତ୍ୟାଦି (୧୦।୫।୬) । ଋଗ୍‌ବେଦରେ ଆପଦଧର୍ମ କଥାର ମଧ୍ୟ ଉଲ୍ଲେଖ ରହିଛି । ସୂକ୍ତକର୍ତ୍ତା ନିଜର କାର୍ଯ୍ୟକୁ ସମର୍ଥନ ଲାଗି କହିଛନ୍ତି (୪।୧୮।୧୩)—"ମୁଁ ଜୀବନ ବଞ୍ଚାଇବାର ଅଭାବରୁ କୁକୁରର ଅନ୍ତନାଡ଼ୀକୁ ପାକ ଖାଇଥିଲି ।" ଜୀବନରକ୍ଷା ଲାଗି ଅଭକ୍ଷ ପଦାର୍ଥ ଖାଇବାରେ ବାଧା ନ ଥିଲା ।

କର୍ମହୀନ ମନୁଷ୍ୟଙ୍କୁ ନିନ୍ଦା କରିଥିବା ସୂକ୍ତ (୪।୨୮।୪)ରେ କୁହାଯାଇଛି—"ହେ ଇନ୍ଦ୍ର, ତୁମେ କର୍ମହୀନ ମନୁଷ୍ୟମାନଙ୍କୁ

---

* ସ୍ତୁହି ଶ୍ରୁତଂ ଗର୍ତସଦଂ ଯୁବାନଂ ମୃଗଂ ନ ଭୀମମୁପହତ୍ନୁ ମୁଗ୍ରମ୍
— ଋଗ୍‌ବେଦ, ୨।୩୩।୧୧

ଗର୍ହିତ କରିବଅ ।" ଏଥିରୁ ଜଣାଯାଏ, କର୍ମହୀନ ମନୁଷ୍ୟ ପସନ୍ଦ-ଯୋଗ୍ୟ ନ ଥିଲେ ।

## ନୈତିକ ଚେତନା

ବରୁଣ ହେଉଛନ୍ତି ଋଗ୍‌ବୈଦିକ ଆର୍ଯ୍ୟଙ୍କର ଶାନ୍ତ ଓ କ୍ଷମାଶୀଳ ଦେବତା, ଇନ୍ଦ୍ର ଦୁର୍ଦ୍ଧର୍ଷ ଦେବତା । ଋଗ୍‌ବେଦର ଅଧିକାଂଶ ଦେବତା ପ୍ରାକୃତିକ ଶକ୍ତିରେ ଚେତନାର ଆରୋପଦ୍ୱାରା ଉଦ୍‌ଭୂତ ହୋଇଥିବା ସ୍ପଷ୍ଟ ହୋଇଉଠିଛି । ସେମାନେ ଅଶରୀରୀ କମ୍ବା ଅଶାନ୍ତିପ୍ରିୟ ନୁହନ୍ତି । ଋଗ୍‌ବେଦ ପରବର୍ତ୍ତୀ ବୈଦିକ ସାହିତ୍ୟରେ ଦେବତାସବୁ ଅଶରୀରୀ ଓ ଅଶାନ୍ତିପ୍ରିୟ ରୂପେ ବର୍ଣ୍ଣିତ ହୋଇଛନ୍ତି ।

ଏହି ଧ୍ୟାନ-ଧାରଣା ଓ ଚିନ୍ତା-ଚେତନାର ପ୍ରକାଶ ଓ ବିକାଶ ପରବର୍ତ୍ତୀ ହିନ୍ଦୁଧର୍ମ ଓ ସାହିତ୍ୟକୁ ପ୍ରଭାବିତ କରିଛି ।

## ପ୍ରକୃତିପ୍ରେମ

ଋଗ୍‌ବେଦର ସୂକ୍ତମାନଙ୍କରେ ପ୍ରକୃତିପ୍ରେମର ବିଶେଷତା ଲକ୍ଷ୍ୟ କରାଯାଏ । ସୂର୍ଯ୍ୟୋଦୟ (ଋଃ ୧।୩୫।୨), ଉଷା ବର୍ଣ୍ଣନା (ଋଃ ୩।୬୧।୧-୫) ଯେଉଳି କାବ୍ୟିକ ହୋଇଛି, ତାହାର ପ୍ରଭାବ ଉତ୍ତରକାଳୀନ ସଂସ୍କୃତ ସାହିତ୍ୟରେ ଦେଖାଯାଏ । ପ୍ରକୃତିର ସ୍ୱାଭାବିକ ରମଣୀୟତା ଓ ରମଣୀୟତାର ପରିପ୍ରକାଶ ସୁନ୍ଦରରୂପେ ପ୍ରତିଫଳିତ ହୋଇଉଠିଛି ।

# "ବ୍ରାହ୍ମଣ" ଯୁଗ

'ବ୍ରାହ୍ମଣ' ରଚିତ ହେବା ସମୟକୁ ଏହାର ରଚୟିତାଗଣ ବୈଦିକ ସାହିତ୍ୟକୁ ଏକ ବଶିଷ୍ଟ ଦୃଷ୍ଟିରେ ବ୍ୟାଖ୍ୟା କରିଛନ୍ତି । କିନ୍ତୁ ବ୍ରାହ୍ମଣର ଭାବନା ବୈଦିକ ସୂକ୍ତର ଭାବଠାରୁ ଭିନ୍ନ ଓ ବିପରୀତ ପ୍ରତୀୟମାନ । ବୈଦିକ ସାହିତ୍ୟର ସ୍ୱାଭାବିକ ଆର୍ଯ୍ୟ ଭାବନା, ଦେବତା ଓ ମନୁଷ୍ୟ ସମ୍ବନ୍ଧକୁ ନିକଟତର କରିଛି; କିନ୍ତୁ 'ବ୍ରାହ୍ମଣ'ରେ ତାହା ଯାନ୍ତ୍ରିକ ରୂପ ଗ୍ରହଣ କରିଛି । ଏଥିରେ ସ୍ୱାର୍ଥପୂର୍ଣ୍ଣ ଦିଆ-ନିଆର ପ୍ରବୃତ୍ତିର ସମାବେଶ ହୋଇଛି । 'ବ୍ରାହ୍ମଣ' ଯୁଗରେ ଆର୍ଯ୍ୟ ମନୋବୃତ୍ତି ଋଗ୍‌ବୈଦିକ ଆର୍ଯ୍ୟଙ୍କ ଅପେକ୍ଷା ସଂକୀର୍ଣ୍ଣ ଓ ବ୍ୟାବହାରିକ ରୂପରେ ଦେଖା ଦେଇଛି, ପୂର୍ବର ସ୍ୱାଭାବିକତା ନଷ୍ଟ ହୋଇଯାଇଛି ।

ବ୍ରାହ୍ମଣ ଯୁଗରେ ପୁରୋହିତ ଶ୍ରେଣୀ ସୃଷ୍ଟି ହୋଇ ଯାଇ-ଛନ୍ତି । ସେମାନେ ବେଦମନ୍ତ୍ରକୁ ଭିନ୍ନ ଅର୍ଥରେ ପ୍ରୟୋଗ କରିଛନ୍ତି । ପୁରୋହିତ ମଧ୍ୟ ଚାରି ଭାଗରେ ବିଭକ୍ତ ହୋଇଥିବା ଏହି ସମୟରେ ଦେଖାଦେଲ—ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା । ପ୍ରଥମେ ତିନି ବର୍ଗର ପୁରୋହିତ ଯଜ୍ଞାନୁଷ୍ଠାନରେ ଯଥାକ୍ରମେ ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦର ମନ୍ତ୍ର ପାଠ କଲେ । ଅଧ୍ୱର୍ଯ୍ୟୁ ପୁରୋହିତ ଯଜ୍ଞର ଭୌତିକ କ୍ରିୟାକୁ ଠିକ୍‌ଭାବେ ଅନୁଷ୍ଠିତ କରିବା କାର୍ଯ୍ୟ କଲେ । ବ୍ରହ୍ମା-ପୁରୋହିତ ଅନ୍ୟମାନଙ୍କ କାର୍ଯ୍ୟ ଠିକ୍ ହୋଇଛି କି ନାହିଁ ଦେଖିବାରେ ନିଯୁକ୍ତ ହେଲେ ।

ଏମାନେ ମଧ୍ୟ ଯଜ୍ଞାନୁଷ୍ଠାନରେ ସ୍ୱର୍ଗ ଓ ଯଶର କାମନା କଲେ, ସାଂସାରିକ ଐଶ୍ୱର୍ଯ୍ୟ, ସୁଖଭୋଗ, ପୁତ୍ର କାମନା ଆଦି ପାଇଁ

ପ୍ରାର୍ଥୀ ହେଲେ (ଐତରେୟ ବ୍ରାହ୍ମଣ ଦ୍ରଷ୍ଟବ୍ୟ) । କିନ୍ତୁ ଏକ ଉଲ୍ଲେ-ଖନୀୟ କଥା ହେଉଛି, ଏମାନେ ଆଉ ଦେବତାଙ୍କ ଉପରେ ଏସବୁର ପ୍ରାପ୍ତି ପାଇଁ ନିର୍ଭରଶୀଳ ହେଲେ ନାହିଁ । ଏମାନଙ୍କ ଧାରଣାରେ ଯଜ୍ଞାନୁଷ୍ଠାନ ବିଧିସଙ୍ଗତଭାବେ ହୋଇପାରିଲେ ଫଳପ୍ରାପ୍ତି ଅନିବାର୍ଯ୍ୟ ବୋଲି ପ୍ରତିଷ୍ଠିତ ହେଲା । ଏପରି କରିବାଦ୍ୱାରା ସେମାନେ ଲାଭବାନ୍ ମଧ୍ୟ ହେଉଥିଲେ ।

ଏହା ଇଷ୍ଟସିଦ୍ଧି ମନ୍ତ୍ରଦ୍ୱାରା କେବଳ ସମ୍ଭବ ବୋଲି ପ୍ରତିଷ୍ଠିତ-ଧାରଣା ସୃଷ୍ଟି ହେଲା । ଫଳରେ ପୁରୋହିତଙ୍କର ମହତ୍ତ୍ୱ ହିଁ ପ୍ରତିଷ୍ଠାର ଚେଷ୍ଟା କରାଗଲା । ଏପରି ବ୍ରାହ୍ମଣ ପୁରୋହିତମାନେ ସିଧା-ସଳଖ ଦେବତାରୂପେ ଗଣିତ ହେଲେ । କୁହାଗଲା—

"ଦୈବାଧୀନଂ ଜଗତ୍‌ସର୍ବଂ ମନ୍ତ୍ରାଧୀନାସ୍ତୁ ଦେବତାଃ ।
ତେ ମନ୍ତ୍ରା ବ୍ରାହ୍ମଣାଧୀନାସ୍ତସ୍ମାଦ୍ ବ୍ରାହ୍ମଣଦୈବତମ୍ ॥

ଅର୍ଥାତ୍ ସଂସାର ଦେବତାଙ୍କ ଅଧୀନ, ଦେବତା ମନ୍ତ୍ରର ଅଧୀନ, ମନ୍ତ୍ର ବ୍ରାହ୍ମଣଙ୍କ ଅଧୀନ; ଏଣୁ ମାନିବା ଉଚିତ ଯେ ବ୍ରାହ୍ମଣ ଦେବତା ଅଟନ୍ତି (୫୧) ।

ବ୍ରାହ୍ମଣ ଯୁଗର ପୁରୋହିତମାନେ ନିଜର ଅଧିକାର ବଳରେ ଯଜ୍ଞାନୁଷ୍ଠାନର ବହୁଳତା ପ୍ରଚାର କରି ପ୍ରକୃତିର ବସ୍ତୁନିଚୟ ନିରୀକ୍ଷଣ ଓ ଅଧ୍ୟୟନ କଲେ ନାହିଁ ।

ବ୍ରାହ୍ମଣ-ଯୁଗର ଏହି ପ୍ରବୃତ୍ତି ପରେ ମୀମାଂସା-ଦର୍ଶନ ତଥା ଏହାର ବ୍ୟାଖ୍ୟାମାନଙ୍କ ରୂପରେ ପଲ୍ଲବିତ ହେଲା । ଏଥିରେ ଆର୍ଯ୍ୟ ମସ୍ତିଷ୍କକୁ ଭୁଲ ଢଙ୍ଗରେ କଳ୍ପନାଶୀଳ ମଧ୍ୟ କରିଦେଲେ ।

କୁହାଯାଏ ଯେ ସଂସ୍କୃତ କାବ୍ୟମାନଙ୍କରେ ମିଳୁଥିବା ଯୁଦ୍ଧର ବର୍ଣ୍ଣନା ଅତ୍ୟଧିକ କାଳ୍ପନିକ । ସେମାନଙ୍କର ପ୍ରକୃତ ଯୁଦ୍ଧରେ, ଯେ ଯେଉଁଠି ଲଢ଼େଇ କଲେ, ଦୂରତ୍ୱର ସୀମାକୁ ମଧ୍ୟ ଗୁରୁତ୍ୱ ଦିଆଯାଇ ନାହିଁ । ଭୀଷ୍ମ ତଥା ଦ୍ରୋଣ, ଅର୍ଜୁନ ଓ କର୍ଣ୍ଣ, ଲକ୍ଷ୍ମଣ ଓ ମେଘନାଦ, ରାମ ଓ ରାବଣ, ସମସ୍ତେ ନିଜ ବାଣ ତଥା ଅନ୍ୟାନ୍ୟ ଅସ୍ତ୍ରକୁ ଅଭିମନ୍ତ୍ରିତ କରି, ମନ୍ତ୍ରଦ୍ୱାରା କ୍ଷମତା-ସଂପନ୍ନ କରାଇ ପ୍ରଯୁକ୍ତ କଲେ । ଏହି ଅଭିମନ୍ତ୍ରଣରୁ 'ଏହି ଶସ୍ତ୍ରାସ୍ତ୍ରମାନଙ୍କର କଳ୍ପିତ ଶକ୍ତି ଅତ୍ୟଧିକ ବଢ଼ିଯାଏ, ଯେଉଁଥିରେ କବି ତଥା ଏହା'ର ପାଠକ ଚକିତ ହୋଇଯାଏ । ସମ୍ଭବତଃ ମନ୍ତ୍ର-ଶକ୍ତିର ଏହି କଳ୍ପନାମୂଳକ ବିଶ୍ୱାସ ଯୋଗୁ ଆ'ମ ଦେଶରେ ନିରୀକ୍ଷଣ ଓ ପ୍ରୟୋଗ ଉପରେ ଆଧାରିତ ବିଜ୍ଞାନର ଉଦୟ ହେବାରେ ବାଧା ଦିଆଗଲା (୫୨) ।

## ଉପନିଷଦ-କାଳ

ବୈଦିକ ବାଙ୍ମୟର ତୃତୀୟ ମହତ୍ତ୍ୱପୂର୍ଣ୍ଣ ଭାଗ ହେଉଛି ଉପନିଷଦ । ବ୍ରାହ୍ମଣ ଗ୍ରନ୍ଥର କିଛି ଅଂଶ ଆରଣ୍ୟକ ନାମରେ ଖ୍ୟାତ ଓ ଆରଣ୍ୟକର କିଛି ଅଂଶକୁ ଉପନିଷଦ କୁହାଗଲା ।

କିନ୍ତୁ ଏହି ଦୁଇ ବିଭାଗର ଭାବନାକୁ ବିଚାର କଲେ ଆକାଶ-ପା'ତାଳ ପ୍ରଭେଦ ଦୃଷ୍ଟିଗୋଚର ହୁଏ । 'ବ୍ରାହ୍ମଣ'ରେ କର୍ମକାଣ୍ଡ, ସନ୍ତାନ, ଐଶ୍ୱର୍ଯ୍ୟ କାମନା ଓ ପରଲୋକପ୍ରାପ୍ତିର ଉଦ୍ଦେଶ୍ୟ ଓ ଇଚ୍ଛା ବ୍ୟକ୍ତ ହୋଇଛି; କିନ୍ତୁ ଉପନିଷଦରେ ଏହାର ବିପରୀତରେ ବୈରାଗ୍ୟ ପ୍ରଦର୍ଶିତ ହୋଇଛି । ଉପନିଷଦର ପରମ ଲକ୍ଷ୍ୟ ହେଉଛି—ଆତ୍ମା ବା ବ୍ରହ୍ମ ଓ ପରମ ଧ୍ୟେୟ ହେଉଛି—ମୁକ୍ତି ବା ଅମୃତତ୍ୱ । ଏଥିରେ ବ୍ରାହ୍ମଣର କର୍ମକାଣ୍ଡ ବିରୋଧରେ ତୀବ୍ର

ପ୍ରତିଷ୍ଠା ଦେଖା ଦେଇଛି । ମୁଣ୍ଡକୋପନିଷଦରେ କୁହାଯାଇଛି—“ଯଜ୍ଞ ରୂପକ କର୍ମ, ଯେଉଁଥିରେ ଷୋଳ ଋତ୍ୱିକ, ଯଜମାନ ଓ ଏହାର ପତ୍ନୀ—ଅଠର ଭାଗ ବିଅନ୍ତି—ଏହା ପୁରୁଣା ନୌକା ସହିତ ସମାନ । ଯେଉଁ ମୂଢ଼ ଲୋକ ଶ୍ରେୟଃ ମନେକରି ଏହାକୁ ଅଭିନନ୍ଦନ କରନ୍ତି, ସେ ବାରମ୍ବାର ବୃଦ୍ଧାବସ୍ଥା ତଥା ମୃତ୍ୟୁକୁ ପ୍ରାପ୍ତ ହୁଅନ୍ତି ।” ଅର୍ଥାତ୍ ଯଜ୍ଞ ଇତ୍ୟାଦି ଅନୁଷ୍ଠାନ ପରମ ଶ୍ରେୟଙ୍କ ପାଇଁ ପର୍ଯ୍ୟାପ୍ତ ନୁହେଁ * ।

ଯଜ୍ଞ-ବିଧାନ ପୁରୋହିତବର୍ଗଙ୍କ ଆର୍ଥିକ ଲାଭ ସହିତ ସମ୍ବନ୍ଧିତ ଥିଲା । ଏଥିପାଇଁ କେତେକ ବିଦ୍ୱାନ୍‌ଙ୍କ ବିଚାରରେ ଏହି ପ୍ରତିକ୍ରିୟା, ଯାହା ଉପନିଷଦରେ ମିଳେ, କ୍ଷତ୍ରିୟଙ୍କଦ୍ୱାରା ଆରମ୍ଭ ହୋଇଛି । ଉପନିଷଦର ଅନେକ ଶିକ୍ଷକ କ୍ଷତ୍ରିୟ—ଯେପରି ଜନକ ଓ ଅଜାତଶତ୍ରୁ । ଗୀତାରେ କର୍ମଯୋଗ ବିଷୟରେ ଶ୍ରୀକୃଷ୍ଣ କହିଛନ୍ତି—“ହେ ଅର୍ଜୁନ, ଏହି ଅବିନାଶୀ ଯୋଗକୁ ମୁଁ (ଆରମ୍ଭରୁ) ବିବସ୍ୱାନଙ୍କୁ କହିଥିଲି, ବିବସ୍ୱାନ୍ ମନୁଙ୍କୁ କହିଲେ, ମନୁ ଇକ୍ଷ୍ୱାକୁଙ୍କୁ କହିଲେ । ଏହି ପ୍ରକାର ପରମ୍ପରାରେ ପ୍ରାପ୍ତ ଏହି ଯୋଗକୁ ରାଜର୍ଷିମାନେ ଜାଣିଲେ । କିନ୍ତୁ ହେ ଅର୍ଜୁନ, ଏହି ଯୋଗ ବହୁ କାଳରୁ ଲୁପ୍ତ ହୋଇ ଯାଇଥିଲା † ।”

ଏହିଥିରୁ ଜଣାଯାଏ ଯେ ଗୀତାର ଯୋଗ ଶିକ୍ଷାର ପ୍ରାରମ୍ଭ କ୍ଷତ୍ରିୟ ରାଜାମାନଙ୍କଦ୍ୱାରା ହୋଇଥିଲା ଓ ଅର୍ଜୁନଙ୍କ ପୂର୍ବରୁ ମଧ୍ୟ ରାଜର୍ଷିମାନଙ୍କ ସଂପତ୍ତି ଥିଲା ।

---

* ପ୍ଲାବା ହ୍ୟେତେ ଅଦୃଢ଼ା ଯଜ୍ଞରୂପା ଅଷ୍ଟାଦଶୋକ୍ତମବରଂ ଯେଷୁ କର୍ମ । ଏତଚ୍ଛ୍ରେୟୋ ଯେଽଭିନନ୍ଦନ୍ତି ମୂଢ଼ା ଜରାମୃତ୍ୟୁନ୍ତେ ପୁନରେବାପି ଯାନ୍ତି ॥ (—ମୁଣ୍ଡକୋପନିଷଦ, ୧।୨।୭)

† ଗୀତା, ଅଧ୍ୟାୟ ୪, ଶ୍ଳୋକ ୧-୨ ।

ବୈଦିକ କର୍ମକାଣ୍ଡବିରୋଧୀ ପ୍ରତିକ୍ରିୟା ଯେ କେବଳ କ୍ଷତ୍ରିୟଙ୍କ ଭିତରେ ହୋଇଥିଲା ତା ନୁହେଁ, ବୌଦ୍ଧ ଯୁଗରେ ଆମେ ଦେଖୁ ଯେ ଏହାର ବିରୋଧୀ ସାଧାରଣ ଲୋକେ ମଧ୍ୟ ଥିଲେ । ଏହାର ବିରୋଧୀ ମଧ୍ୟ ଅନେକ ଦରିଦ୍ର ବ୍ରାହ୍ମଣ ଥିଲେ । କର୍ମକାଣ୍ଡ ତଥା ହିଂସାପୂର୍ଣ୍ଣ ଯଜ୍ଞ ବିରୋଧରେ ପ୍ରବଳ ପ୍ରତିକ୍ରିୟାରୁ ହିଁ ବୌଦ୍ଧଧର୍ମର ଜନ୍ମ, ଯାହାର ପ୍ରବର୍ତ୍ତକ ହେଉଛନ୍ତି କ୍ଷତ୍ରିୟ ବୁଦ୍ଧଦେବ ।

ଏହି ଉପନିଷଦ କାଳରୁ ହିଁ ଭୌତିକ-ଶାରୀରିକ ସଂପତ୍ତି ତଥା ସୁଖଭୋଗ ପ୍ରତି ବିରକ୍ତିର ଅନୁଭବର ଆରମ୍ଭ । ସାଂସାରିକ ଭୋଗ, ଐଶ୍ୱର୍ଯ୍ୟ ପ୍ରତି ବୈରାଗ୍ୟ-ଭାବନା, ଭୌତିକ ସୁଖର ସୀମା ତଥା ନଶ୍ୱରତା ଇତ୍ୟାଦିର ଧାରଣା ଭାରତୀୟ ସାଂସ୍କୃତିକ ଚେତନାର ଏକ ସ୍ଥାୟୀ ପ୍ରବୃତ୍ତି ରୂପେ ଦେଖା ଦେଲା । ଏପରି କି ଏହି ଭାବନା ଏହି ସମୟର ଶାସକ ତଥା ବିଜେତାଙ୍କଠାରେ ମଧ୍ୟ ଲକ୍ଷ୍ୟ କରିଯାଏ—ଯାହାଙ୍କର ମୁଖ୍ୟ କାର୍ଯ୍ୟ ହେଉଛି ଭୌତିକ କ୍ଷେତ୍ର ତଥା ଐଶ୍ୱର୍ଯ୍ୟର ସଂପାଦନ । ଉପନିଷଦରେ କୁହାଯାଇଛି—"ଯାହା ଭୂମା ଅଟେ ଅର୍ଥାତ୍ ବୃହତ୍ ବା ବିଶାଳ ଅଥବା ଅସୀମ ଅଟେ, ସେଥିରେ ସୁଖ; ଅଳ୍ପରେ, ସୀମିତରେ ସୁଖ ନାହିଁ ।" ଏହାର ତାତ୍ପର୍ଯ୍ୟ ହେଉଛି ଯେ ଭାରତୀୟ ସମ୍ବେଦନା ଭୌତିକ ସୁଖଭୋଗ ତଥା ଐଶ୍ୱର୍ଯ୍ୟରେ ନିହିତ ସସୀମ ତୃପ୍ତିରେ ସନ୍ତୁଷ୍ଟ ହୁଏ ନାହିଁ (୫୩)। ଏହି ଧାରଣା ଓ ଚେତନା ଉପନିଷଦ କାଳରେ ବଳବତ୍ତର ହୋଇଉଠିଲା ଏବଂ ଏହାର ପରଠାରୁ ରାମାୟଣ- ମହାଭାରତର ଯୁଗରେ ଯେଉଁ ବିଶେଷତାର ସଂଘର୍ଷ ଓ ଜଟିଳ ରୂପ ଦେଖାଯାଏ, ତାହାର ବିକାଶ ଏହିଠାରୁ ହିଁ ଆରମ୍ଭ ହେଲା ।

# ରାମାୟଣ-ମହାଭାରତରେ ସାଂସ୍କୃତିକ ଚେତନା

ଯେ କୌଣସି ଜାତିର ଇତିହାସ ଅଧ୍ୟୟନ କଲେ ଜଣାଯାଏ ଯେ ସେହି ସମାଜର ବସ୍ତୁବାଦର ଅସାମଞ୍ଜସ୍ୟ, ଅନ୍ତର୍ବିରୋଧ ଓ ଅନ୍ତର୍ଦ୍ୱନ୍ଦ୍ୱର ପରିପ୍ରକାଶରେ ସଂଘର୍ଷ ଓ ସମନ୍ୱୟ ହିଁ ଉତ୍ତରକାଳର ମନୁଷ୍ୟମାନଙ୍କ ପାଇଁ ପ୍ରେରଣା ଦାନ କରିଥାଏ ଏବଂ ସେହି ସମନ୍ୱୟ ପୁଣି ସଂଘର୍ଷରେ ପରିଣତ ହୋଇ ନୂତନ ଜ୍ଞାନଚେତନାର ଜନ୍ମ ଦେଇଥାଏ ।

ଯେଉଁ ଯୁଗ ଓ ଜୀବନର ଚିତ୍ର ମହାଭାରତରେ ରହିଛି, ତାହା ବହୁ ଅନ୍ତର୍ବିରୋଧ ତଥା ଦ୍ୱନ୍ଦ୍ୱରେ ପରିପୂର୍ଣ୍ଣ । ବୈଦିକକାଳର ଆର୍ଯ୍ୟମାନେ ନିଜେ ଏକତାବଦ୍ଧ ହୋଇ ଶତ୍ରୁ ବିରୋଧରେ ଲଢ଼ିଥିବା ପ୍ରମାଣ ଅଛି । ନିଜ ମଧ୍ୟରେ ଦ୍ୱନ୍ଦ୍ୱ ଓ ବିରୋଧର ଆଭାସ ଅବଶ୍ୟ ବହୁ ପରେ ମିଳେ; କିନ୍ତୁ ମହାଭାରତରେ ଦେଖାଯାଏ, ଆର୍ଯ୍ୟମାନଙ୍କ ମଧ୍ୟରେ ହିଁ ଯୁଦ୍ଧବିଗ୍ରହ । ଏହି ସମୟକୁ ବୈଦିକ ସାମାଜିକ ସ୍ଥିତି ଯାହା ଥିଲା, ତାହାର ବହୁ ପରିବର୍ତ୍ତନ ସାଧିତ ହୋଇଗଲାଣି ଏବଂ କୃଷି ଓ ଗୋଚାରଣ ଭିତ୍ତିକ ସମାଜର ଧ୍ୱଂସ ସ୍ତୂପ ଉପରେ ସାମନ୍ତ-ସମାଜ ଓ ବ୍ୟକ୍ତିଗତ ସଂପତ୍ତିର ଆବିର୍ଭାବ ହେଲାଣି । ଏହି ସମୟର ସଂଘର୍ଷ ଦୁଇଟି ସଭ୍ୟତାର ସଂଘର୍ଷ ନୁହେଁ, ଏହା ଗୋଟିଏ ଆର୍ଯ୍ୟ ସମାଜର ଅନ୍ତର୍ଦ୍ୱନ୍ଦ୍ୱରୁ ଜାତ ସଂଘର୍ଷ ।

ଏହାର ବିପରୀତରେ, ରାମାୟଣରେ ଦେଖାଯାଏ, ତାହାର ସଂଘର୍ଷ ଦୁଇଟି ସଂସ୍କୃତି ତଥା ସଭ୍ୟତାର ସଂଘର୍ଷ । ଅବଶ୍ୟ ମହାଭାରତରେ ଦେଖାଯାଏ—ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ଦୁଇଟି ଜୀବନାଦର୍ଶକୁ କେନ୍ଦ୍ରକରି ସଂଘର୍ଷରେ ବ୍ୟାପୃତ ହୋଇଛନ୍ତି । କିନ୍ତୁ ରାମାୟଣରେ

ରାମ ଓ ଭରତଙ୍କ ମଧ୍ୟରେ ଏପରି ଜୀବନାଦର୍ଶର ସଂଘର୍ଷ ଦେଖାଯାଏ ନାହିଁ । ଦଶରଥଙ୍କଠାରୁ କୈକେୟୀ ବର ମାଗି ଯେଉଁ ପରିସ୍ଥିତି ସୃଷ୍ଟି କଲେ, ସେହି ଘଟଣାରୁ କ୍ଷମତା ଓ ସାମାଜିକ ପ୍ରତିଷ୍ଠା କ୍ଷେତ୍ରରେ ଯେ ଅନ୍ତର୍ସଂଘର୍ଷ ବିଦ୍ୟମାନ ଥିଲା, ତାହା ସ୍ପଷ୍ଟ ଜଣାଯାଏ । କିନ୍ତୁ ରାମାୟଣରେ ଯେଉଁ ଯେଉଁ ବୀଜର ଅଙ୍କୁର ହେଲା—ତାର ଫଳାଫଳ ମନ୍ଦ ହୋଇ ନାହିଁ, ଅର୍ଥାତ୍ ଅସୁରଙ୍କ ଅତ୍ୟାଚାର ଧ୍ୱଂସ ହୋଇଛି । ଏହା ଅବଶ୍ୟ ଆର୍ଯ୍ୟ ଚିନ୍ତାରେ ପ୍ରତିଫଳିତ । କିନ୍ତୁ ଏହାର ତାତ୍ତ୍ୱିକ ବିଚାର କଲେ ରାମ-ରାବଣ ଯୁଦ୍ଧ ମଧ୍ୟ ଭିନ୍ନ ଚିନ୍ତା-ଚେତନାର ପରିପ୍ରକାଶ ଲାଗି ଅପେକ୍ଷା ରଖେ । ତେବେ ଏ କ୍ଷେତ୍ରରେ ତାହାର ଆଲୋଚନା ଅନାବଶ୍ୟକ ଥିବାରୁ ସେଥିରୁ ନିବୃତ୍ତ ହେବାକୁ ହେଉଛି । ତେବେ ଏହି ସଂଘର୍ଷର ପ୍ରଧାନ କ୍ଷେତ୍ର ଅଯୋଧ୍ୟା ନୁହେଁ, ଲଙ୍କା । ଆଦିକବି ବାଲ୍ମୀକିଙ୍କ ଦୃଷ୍ଟିରେ ଲଙ୍କାର ସଂସ୍କୃତି ଓ ଅଯୋଧ୍ୟାର ସଂସ୍କୃତି ଦୁଇଟି ଭିନ୍ନ ଜୀବନ-ଦୃଷ୍ଟିର ପ୍ରତୀକ ହୋଇ-ଉଠିଛି ।

ମହାଭାରତରେ କର୍ମ ଓ ସଂଘର୍ଷର ପ୍ରାଧାନ୍ୟ ରହିଛି । ଏହି କର୍ମ ଓ ସଂଘର୍ଷ ଯୋଗୁ ସଂସ୍କୃତ କାବ୍ୟପରମ୍ପରାରେ ମହାଭାରତକୁ କାବ୍ୟର ଆସନ ଦିଆଯାଇ ନାହିଁ । ବିଶୁଦ୍ଧ କାବ୍ୟରେ ସୌନ୍ଦର୍ଯ୍ୟ-ଦୃଷ୍ଟିର ପ୍ରାଧାନ୍ୟ ଥାଏ, କର୍ମର ପ୍ରାଧାନ୍ୟ ନୁହେଁ । କିନ୍ତୁ ସଂସ୍କୃତ କାବ୍ୟ ସଂଜ୍ଞାର ଏହି ମୌଳିକତା ସଂପୂର୍ଣ୍ଣରୂପେ ରକ୍ଷାକରା ନ ଯାଇ ଥିଲେ ମଧ୍ୟ ରାମାୟଣକୁ ଆଦିକାବ୍ୟର ଗୌରବରେ ମଣ୍ଡିତ କରାଯାଇଛି । ରାମାୟଣରେ ମଧ୍ୟ କର୍ମ ଓ ସଂଘର୍ଷର ବର୍ଣ୍ଣନା ମୁଖ୍ୟ ସ୍ଥାନ ଅଧିକାର କରିଥିବା ସତ୍ତ୍ୱେ ଏହାକୁ କାବ୍ୟ ଭାବରେ ସ୍ଥାପିତ

କରିବାର କାରଣ ସ୍ୱରୂପ ଉଲ୍ଲେଖ କରାଯାଏ ଯେ ମହାଭାରତ ଅପେକ୍ଷା ଆଦିକବିଙ୍କ ଦୃଷ୍ଟି ସୌନ୍ଦର୍ଯ୍ୟ ପ୍ରତି ଅଧିକ ଉନ୍ମୁଖ ।

ତେବେ ସେ ଯାହାହେଉ, ବର୍ତ୍ତମାନ ଏଠାରେ ଆମେ ରାମାୟଣ ଓ ମହାଭାରତରେ ବର୍ଣ୍ଣିତ ସାଂସ୍କୃତିକ ଚେତନାର କେତେକ ଆଲୋଚନା କରିବା । ଏକଥା ମନେରଖିବା ଉଚିତ ହେବ ଯେ ଯେଉଁ ଚିନ୍ତାଚେତନା ଓ ସୌନ୍ଦର୍ଯ୍ୟର ପରିପ୍ରକାଶ ଲିପିବଦ୍ଧ ହୋଇଛି, ତାହା ସେହି ସମାଜ ତଥା ପରବର୍ତ୍ତୀ ସମାଜର ପ୍ରାଥମିକ ସ୍ତରର ଶିଷ୍ଟ ଲୋକଙ୍କଦ୍ୱାରା ପ୍ରବର୍ତ୍ତିତ ଓ ପୋଷିତ । ଏ ବିଷୟରେ ପୂର୍ବରୁ ସମ୍ୟକ୍ ଆଲୋଚନା କରାଯାଇଛି ସଂସ୍କୃତିର ସଂଜ୍ଞା ଅଧ୍ୟାୟରେ ।

# ରାମାୟଣରେ ସୌନ୍ଦର୍ଯ୍ୟ-ଚେତନା

ସୌନ୍ଦର୍ଯ୍ୟ ସୃଷ୍ଟି ଏବଂ ଅନୁଭୂତି ଜୀବନ-ସଂଭୋଗର ଏକ ପ୍ରଧାନ ଉପକରଣ । ସୌନ୍ଦର୍ଯ୍ୟବୋଧର ଏକ କାବ୍ୟିକ ସଂଜ୍ଞା ହେଉଛି—ମନୁଷ୍ୟର ସୁଖ-ଦୁଃଖ ତଥା ଆନନ୍ଦ-ବେଦନାକୁ ଏକ ଉତ୍କୃଷ୍ଟ ମାଧ୍ୟମରେ ଅନ୍ୟର ସୁଖ ଦୁଃଖ ତଥା ଆନନ୍ଦ ବେଦନା ସହିତ ମିଶାଇଦେବା । ଯେଉଁ ଅନୁଭୂତିପୂର୍ଣ୍ଣ ସୌନ୍ଦର୍ଯ୍ୟର ପ୍ରକାଶ ରାମାୟଣରେ ଦୃଷ୍ଟ ହୁଏ, ତାହା ରାମଙ୍କ ଜୀବନ-ଚିତ୍ରରୁ ମିଳେ । ପ୍ରଥମ ଦୁଇ କାଣ୍ଡରେ ରାମଙ୍କର ଯେଉଁ ଜୀବନ-ଚିତ୍ର କରାଯାଇଛି, ସେହି ଜୀବନରେ ବ୍ୟାଘାତ ସୃଷ୍ଟି କରିଛି ରାବଣ । ଏହି ବ୍ୟାଘାତ ସୃଷ୍ଟିର ଫଳ ସ୍ୱରୂପ ରାମ ରାବଣକୁ ବଧ କରିବା ଏକ କର୍ତ୍ତବ୍ୟ ରୂପେ ପ୍ରତିଷ୍ଠିତ ହୋଇଛି ଓ ତାହା ମହତ୍ତ୍ୱପୂର୍ଣ୍ଣ ବୋଲି ବିବେଚିତ ହୋଇଛି । ଏ କ୍ଷେତ୍ରରେ ରାମଙ୍କଠାରୁ ସୀତାଙ୍କ ବିଚ୍ଛେଦର ଏକ କାରୁଣ୍ୟପୂର୍ଣ୍ଣ ବିବରଣ ଆଦିକବି ଦେଇଛନ୍ତି, ଯାହା ପ୍ରତ୍ୟେକର ଅନ୍ତର ସ୍ପର୍ଶ କରେ । ଏହି ସଂଯୋଗ-ବିଯୋଗର ସୃଷ୍ଟି—ସୌନ୍ଦର୍ଯ୍ୟ । ମହାଭାରତରେ ଏହି ପ୍ରକାରର ବର୍ଣ୍ଣନା କମ୍ ଦେଖାଯାଏ । ମହାଭାରତରେ ଅଭିମନ୍ୟୁ ବଧ ତଥା ସୌପ୍ତିକ-ପର୍ବ ଓ ସ୍ତ୍ରୀ-ପର୍ବରେ ଯେଉଁ ବର୍ଣ୍ଣନା ତାହା ନୈତିକ-ବିକ୍ଷୋଭ ପ୍ରଧାନ, ବ୍ୟକ୍ତି ବିଷୟକ ସୌନ୍ଦର୍ଯ୍ୟବୋଧ ନୁହେଁ ।

ମହାଭାରତରେ ପ୍ରକୃତି-ବର୍ଣ୍ଣନାର ବିରଳତା ଦେଖାଯାଏ । ନାୟିକା-ବର୍ଣ୍ଣନା କିମ୍ବା ପ୍ରକୃତି-ବର୍ଣ୍ଣନା ସମାପ୍ତିର ନାୟିକା ବା ପ୍ରକୃତି-ବର୍ଣ୍ଣନା ପରି ଉଦ୍ଦେଶୀର୍ଣ୍ଣ ନୁହେଁ । ମହାଭାରତର ଦ୍ରୋଣ-ପର୍ବରେ ଚନ୍ଦ୍ରୋଦୟର * ବର୍ଣ୍ଣନା ପରି ଉଦ୍ଦେଶୀର୍ଣ୍ଣ ବର୍ଣ୍ଣନା ମହାଭାରତର ଅନ୍ୟତ୍ର ନାହିଁ । ଗନ୍ଧମାର୍ଦ୍ଦନ ପର୍ବତର ବର୍ଣ୍ଣନା ପୂରାପୂରି ବିବରଣାତ୍ମକ (୫୪) ।

କିନ୍ତୁ ମହାଭାରତରେ ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ବଶିଷ୍ଟ ରୂପ ଗ୍ରହଣ କରି ନାହିଁ । ମହାଭାରତରେ ବହୁ ନାରୀ ଚରିତ୍ରର ସମାବେଶ ହୋଇଛି; ଯଥା—ଦ୍ରୌପଦୀ, ସୁଭଦ୍ରା, ଉତ୍ତରା ପ୍ରଭୃତି । କିନ୍ତୁ ଏମାନଙ୍କର ବିଶଦ ଚିତ୍ର ଦେବାର ପ୍ରଯତ୍ନ କରାଯାଇ ନାହିଁ । ଏପରି କି ମହାଭାରତର ଶ୍ରେଷ୍ଠ ଓ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଦ୍ରୌପଦୀଙ୍କ ସ୍ୱୟଂବରବେଳେ ସ୍ୱୟଂବର ସଭାର ଯେପରି ବିବରଣୀ ଦିଆଯାଇଛି, ତା' ଅପେକ୍ଷା ଦ୍ରୌପଦୀଙ୍କ ବର୍ଣ୍ଣନା ବହୁତ କମ୍ ରହିଛି । ରାଜାମାନଙ୍କ ବର୍ଣ୍ଣନା ତଥା ଦ୍ରୌପଦୀଙ୍କୁ ଦେଖି ରାଜାମାନେ କାମପୀଡ଼ିତ ହୋଇପଡ଼ିବା ବର୍ଣ୍ଣନା ରହିଛି; କିନ୍ତୁ ଦ୍ରୌପଦୀଙ୍କ

---

* ତତଃ କୁମୁଦନାଥେନ କାମିନୀଗଣ୍ଡପାଣ୍ଡୁନା ।
  ନେତ୍ରାନନ୍ଦେନ ଚନ୍ଦ୍ରେଣ ମାହେନ୍ଦ୍ରୀ ଦିଗଳଂକୃତା ॥
  —ଦ୍ରୋଣପର୍ବ, ୧୨।୫୪୧

ଅର୍ଥାତ୍ "ତେବେ କାମିନୀର କପୋଳ ପରି ଶୁଭ୍ରବର୍ଣ୍ଣ, ନେତ୍ରକୁ ଆନନ୍ଦ ଦେଉଥିବା କୁମୁଦନାଥ ଚନ୍ଦ୍ରମା ପୂର୍ବ ଦିଗକୁ ଅଳଙ୍କୃତ କଲେ ।"

ସୌନ୍ଦର୍ଯ୍ୟ-ବର୍ଣ୍ଣନାରେ କେବଳ ତନୁମଧ୍ୟମା, କ୍ଷୀଣା, ନୀଳ କମଳର ପରି ଗନ୍ଧ ତାଙ୍କ ଶରୀରରୁ ସେହିପରି ଗନ୍ଧ କୋଶେ ବାଟ ପର୍ଯ୍ୟନ୍ତ ବହୁଛି (୫୫), ସୁନ୍ଦର ବସ୍ତ୍ର ପରିହିତା, ସମସ୍ତ ଆଭୂଷଣରେ ଭୂଷିତା (୫୬) ଇତ୍ୟାଦିର ବର୍ଣ୍ଣନା ବ୍ୟତୀତ ସୌନ୍ଦର୍ଯ୍ୟର ଚମତ୍କାରିତା ପ୍ରତି ପ୍ରଯତ୍ନ ହୋଇ ନାହିଁ । ଅବଶ୍ୟ ଏହାଦ୍ୱାରା ମହାଭାରତ ରଚୟିତାଙ୍କ ସୌନ୍ଦର୍ଯ୍ୟ-ବର୍ଣ୍ଣନା କିମ୍ବା ଅଳଙ୍କାର-ପ୍ରଯୋଜନାର ଅକ୍ଷମତା ଦର୍ଶାଯାଉ ନାହିଁ । ମହାଭାରତକାରଙ୍କ ଦୃଷ୍ଟିରେ ବ୍ୟକ୍ତିକୃତ କର୍ମ ହିଁ ମହତ୍ତ୍ୱପୂର୍ଣ୍ଣ । ତାହା ହିଁ ମହାଭାରତରେ ସୁନ୍ଦରରୂପେ ବର୍ଣ୍ଣିତ ହୋଇଛି ।

ଏହି ଆଲୋଚନା ସହିତ ରାମାୟଣର ଆଲୋଚନାକୁ ମିଶାଇ ଦେଖିଲେ ଜଣାଯାଏ ଯେ ମହାଭାରତ ଅପେକ୍ଷା ରାମାୟଣର ସୌନ୍ଦର୍ଯ୍ୟ-ସଂବେଦନ ଅଧିକ କବିତ୍ୱମୟ । ରାମାୟଣରେ ପ୍ରକୃତି-ବର୍ଣ୍ଣନାର ପ୍ରଚୁରତା ମଧ୍ୟ ରହିଛି । ବିବରଣାତ୍ମକ ବର୍ଣ୍ଣନାରେ ମଧ୍ୟ ଚମତ୍କାରିତା ଆରୋପିତ ହୋଇଅଛି (୫୭) ।

ଅଯୋଧ୍ୟା-କାଣ୍ଡରେ ଗଙ୍ଗାର ବର୍ଣ୍ଣନାକୁ କବି ସର୍ବାଙ୍ଗ ସ୍ତ୍ରୀ ରୂପରେ ବର୍ଣ୍ଣନା କରିଛନ୍ତି । ସେହିପରି କିଷ୍କିନ୍ଧା କାଣ୍ଡରେ ପମ୍ପା ବର୍ଣ୍ଣନା, ପଞ୍ଚବଟୀ, ଦଣ୍ଡକାରଣ୍ୟ, ଅରିଷ୍ଟ ପର୍ବତ ଆଦି ବର୍ଣ୍ଣନାରେ ମଧ୍ୟ ଚମତ୍କାରିତା ଆରୋପିତ ହୋଇଛି । କିଷ୍କିନ୍ଧା କାଣ୍ଡରେ ବର୍ଷା ଓ ଶରତ୍ ବର୍ଣ୍ଣନା ବିଶେଷ ମନୋହର ରୂପରେ ପ୍ରତିଭାତ ହୋଇ-ଉଠିଛି । ସୁନ୍ଦର କାଣ୍ଡରେ ବର୍ଣ୍ଣିତ ହନୁମାନର ରାବଣ ଅନ୍ତଃପୁର ଦର୍ଶନରେ ନାରୀ-ଚରିତର ଯେଉଁ ରୂପ ପ୍ରକଟିତ ହୋଇଛି, ତାହା ମଧ୍ୟଯୁଗର ରାଜନ୍ୟବର୍ଗଙ୍କ ବିଳାସିତାର ଯେପରି ଏକ ପ୍ରଚ୍ଛନ୍ନ ବର୍ଣ୍ଣନା

ପରି ଜଣାଯାଏ । ଅବଶ୍ୟ ହୃଦୟାବେଗର ବନ୍ଧୁ ବାସ୍ତବ ସଂକେତ ତାହା ଧାରଣ କରିଛି ।

ଭାରତୀୟ କାବ୍ୟରେ ପୁରୁଷ-ରୂପ ବର୍ଣ୍ଣନାର ବିଶେଷ ପ୍ରବୃତ୍ତି ଦେଖାଯାଏ ନାହିଁ । ଅବଶ୍ୟ ପରବର୍ତ୍ତୀ ସଂସ୍କୃତ ସାହିତ୍ୟରେ ଶ୍ରୀହର୍ଷ ନଳଙ୍କ ଶାରୀରିକ ସୌନ୍ଦର୍ଯ୍ୟର ବିଶେଷ ବର୍ଣ୍ଣନା କରିଛନ୍ତି । କାଳିଦାସ ପ୍ରମୁଖ କବିଗଣଙ୍କ କାବ୍ୟରେ ନାୟକର ବ୍ୟକ୍ତିତ୍ୱ ସହିତ ଶୌର୍ଯ୍ୟର ବିଶେଷ ସ୍ଥାନ ରହିଛି । ମହାଭାରତରେ ଦେଖାଯାଏ, ନାୟକ-ବର୍ଣ୍ଣନାରେ ଶକ୍ତିର ନିରୂପଣ ସର୍ବାଧିକ । ମହାଭାରତର ମୁଖ୍ୟ ପାତ୍ରମାନେ ସ୍ୱତନ୍ତ୍ର ଭାବେ ଶକ୍ତିଶାଳୀ ବ୍ୟକ୍ତିତ୍ୱସଂପନ୍ନ । ଭୀମ ଓ ଅର୍ଜ୍ଜୁନ, ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନି, ଭୀଷ୍ମ ଓ ଦ୍ରୋଣ—ପ୍ରତ୍ୟେକଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱ ପ୍ରତ୍ୟେକଙ୍କଠାରୁ ଭିନ୍ନ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ଏ କ୍ଷେତ୍ରରେ କବି ବୈଶିଷ୍ଟ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ ସହିତ ନୈତିକ ବିଚାରଧାରାର ସ୍ୱତନ୍ତ୍ରତାରେ ସ୍ୱୟଂ-ସଂପୂର୍ଣ୍ଣ କରିଛନ୍ତି ପ୍ରତ୍ୟେକଟି ଚରିତ୍ରକୁ । ଏହି ଚରିତ୍ରଗୁଡ଼ିକ ପ୍ରତ୍ୟେକେ ଏକ ଏକ ବିଶେଷ ଐତିହାସିକ ଚରିତ୍ରରୂପେ ପ୍ରତିଷ୍ଠିତ ହୋଇଛନ୍ତି । ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଦ୍ରୌପଦୀ, ଧୃଷ୍ଟଦ୍ୟୁମ୍ନଙ୍କର ଜନ୍ମ-ଇତିହାସ ସ୍ୱତନ୍ତ୍ର ।

ରାମାୟଣର ବୀର ନାୟକ ଭିନ୍ନ ଭିନ୍ନ ଜାତି ତଥା ଭିନ୍ନ ଭିନ୍ନ ସଂସ୍କୃତିର । ରାକ୍ଷସ ଚରିତ୍ରରେ କବିଙ୍କ ଅନ୍ତରଞ୍ଜନ ସ୍ପଷ୍ଟ—ଯେପରି ରାବଣ ଓ କୁମ୍ଭକର୍ଣ୍ଣ । ଆର୍ଯ୍ୟଜାତିର ବୀର ରାମ ପ୍ରମୁଖ ସେହିପରି ଅନ୍ତରଞ୍ଜନଠାରୁ ଭିନ୍ନ । ରାମାୟଣର ପୁରୁଷ ନାୟକମାନେ ଶାସ୍ତ୍ର-ଜ୍ଞାନସଂପନ୍ନ ଭାବେ ଚିତ୍ରିତ । ଏପରି କି ରାମ ଋଷ୍ୟମୁକ ପର୍ବତରେ

ସୁଗ୍ରୀବ ସଚିବ ହନୁମାନ କଥାରେ ପ୍ରଭାବିତ ହୋଇ ଲକ୍ଷ୍ମଣଙ୍କୁ କହିଛନ୍ତି— "ଏମାନେ ଅବଶ୍ୟ ବ୍ୟାକରଣ ଅଦ୍ଧ ଅଧ୍ୟୟନ କରିଛନ୍ତି; କାରଣ ବହୁ କଥାବାର୍ତ୍ତାରେ ମଧ୍ୟ କୌଣସି ଖରାପ ଶବ୍ଦ ବ୍ୟବହାର କରି ନାହାନ୍ତି * ।"

---

* ନୂନଂ ବ୍ୟାକରଣଂ କୃତସ୍ନମନେନ ବହୁଧା ଶ୍ରୁତମ୍ ।
ବହୁବ୍ୟାହରତାନେନ ନ କିଂଚିଦପଶାବ୍ଦିତମ୍ ॥

—କିଷ୍କିନ୍ଧା, ୩।୨୯

# ଭୌତିକ ଚିନ୍ତାର ବାସ୍ତବତା

ମହାଭାରତରେ ଶିଷ୍ଟାଚରଣ ଓ ଦୁଷ୍ଟାଚରଣ ଚିତ୍ରଣ ସହିତ ଭୌତିକ ବସ୍ତୁପ୍ରାପ୍ତିର ପ୍ରମୁଖ ସ୍ଥାନ ରହିଛି । ଯୁଦ୍ଧର ବିଭୀଷିକାକୁ ଏଡ଼ାଇଦେବା ଲାଗି ପାଣ୍ଡବମାନେ ପାଞ୍ଚ ଖଣ୍ଡି ଗାଁ ନେଇ ସନ୍ତୁଷ୍ଟ ରହିବା ଲାଗି ପ୍ରସ୍ତୁତ ହୋଇଯାଇଥିଲେ । ସେମାନେ ରାଜ୍ୟଶ୍ରୀ ପ୍ରତି ଉଦାସୀନ ନ ଥିଲେ । ଉଦ୍ୟୋଗ ପର୍ବରେ ଶ୍ରୀକୃଷ୍ଣଙ୍କୁ ସନ୍ଧି ପାଇଁ ପ୍ରେରଣ କଲାବେଳେ ଯୁଧିଷ୍ଠିର କହିଛନ୍ତି—ଦୁଷ୍ଟାତ୍ମା ଦୁର୍ଯ୍ୟୋଧନ ସେମାନଙ୍କୁ ପାଞ୍ଚଟି ଗାଁ ଦେବାକୁ ମଧ୍ୟ ରାଜି ନୁହେଁ । "......ଆମେ ଆଜିକାଲି ଖାଦ୍ୟ ମଧ୍ୟ ଦେଖିବାକୁ ପାଉ ନାହୁଁ । ଧନକୁ ହିଁ ପରମ ଧର୍ମ କୁହାଯାଏ, ଧନଦ୍ୱାରା ସବୁ କିଛି ପ୍ରତିଷ୍ଠିତ, ଦୁନିଆରେ ସେହି-ଲୋକ ଜୀବିତ ରହେ ଯାହା ପାଖରେ ଧନ ଅଛି, ଧନହୀନ ଲୋକ ତ ମୃତତୁଲ୍ୟ । ଏପରି ଆମେ ଲକ୍ଷ୍ମୀଙ୍କୁ ତ୍ୟାଗ କରିବା କୌଣସିମତେ ମଧ୍ୟ ନ୍ୟାୟଯୁକ୍ତ ନୁହେଁ, ଏଥିପାଇଁ ପ୍ରୟତ୍ନ କରି ଯଦି ଆମକୁ ମରିବାକୁ ହୁଏ, ତାହେଲେ ବରଂ ଭଲ" ✻ ।

---

✻ ନାତଃ ପାପୀୟସୀଂ କାଞ୍ଚିଦବସ୍ଥାଂ ଶମ୍ବରୋଽବ୍ରବୀତ୍ ।
ଯତ୍ର ନୈବାଦ୍ୟ ନ ପ୍ରାତର୍ଭୋଜନଂ ପ୍ରତିଦୃଶ୍ୟତେ ॥
ଧନମାହୁଃ ପରଂ ଧର୍ମଂ ଧନେ ସର୍ବଂ ପ୍ରତିଷ୍ଠିତମ୍ ।
ଜୀବନ୍ତି ଧନିନୋ ଲୋକେ ମୃତା ଯେ ତ୍ୱଧନା ନରାଃ ॥
ତ ଶ୍ରିୟଂ ନ ଶ୍ରିୟଂ ହାତୁମଲଂ ନ୍ୟାଯ୍ୟେନ କେନଚିତ୍ ।
ଅତ୍ର ନୋ ଯତମାନାନାଂ ବଧଶ୍ଚେଦପି ସାଧୁ ତେ ॥
—ଉଦ୍ୟୋଗପର୍ବ, ୭୨ । ୨୨-୨୩ । ୪୧

ପୂର୍ବରୁ ଯୁଧିଷ୍ଠିରଙ୍କୁ କୃଷ୍ଣଙ୍କଦ୍ୱାରା ସନ୍ଦେଶ ଦେଇ କୁନ୍ତୀ କହିଛନ୍ତି—"ହେ ଯୁଧିଷ୍ଠିର ! ପିତାଙ୍କଠାରୁ ପ୍ରାପ୍ତ ତୁମର ଯେଉଁ ଅଂଶ (ହିସ୍‌ସା) ବୁଡ଼ିଗଲା, ତାହାକୁ ସାମ, ଭେଦ, ଦାନ, ଦଣ୍ଡ ଅଥବା କୂଟନୀତି (ନୟ) ବା ନୀତି—ଯେ କୌଣସି ଉପାୟରେ ଉଦ୍ଧାର କର *।" ନକୁଳ ସହଦେବଙ୍କୁ କହିଛନ୍ତି—"ଧନ ହିଁ ମହତ୍ତ୍ୱପୂର୍ଣ୍ଣ, ମନୁଷ୍ୟର ଯିବା ଆସିବା—ସବୁ ସମୟରେ ନାନା ଉପାୟରେ ଧନପ୍ରାପ୍ତିର ଯୋଗ ସୃଷ୍ଟି କରିବା ଉଚିତ । ଧନରେ ଯୁକ୍ତ ଧର୍ମ ଓ ଧର୍ମରେ ଯୁକ୍ତ ଧନ, ଏହା ହିଁ ମହତ୍ତ୍ୱପୂର୍ଣ୍ଣ ଅଟେ ।

ରାମାୟଣରେ ଭୌତିକ ସମ୍ପଦ ପ୍ରତି କେହି ହେଲେ ବିମୁଖ ନୁହନ୍ତି । ରାମଚନ୍ଦ୍ରଙ୍କର ବନବାସ କଥାରେ କ୍ଷୁବ୍ଧ ହୋଇ କୌଶଲ୍ୟା କହିଛନ୍ତି—"ମୋର ଦୁଃଖ ଏଥିପାଇଁ ଯେ ମୋର ପୁତ୍ରର କଲ୍ୟାଣ ପାଇଁ ଯେଉଁ ବ୍ରତ, ଦାନ, ସଂଯମ ଓ ତପ କରିଥିଲି, ତାହା ସବୁ ନିଷ୍ଫଳ ହୋଇଗଲା—ଯେପରି ଊଷରରେ ବୁଣା ହୋଇଥିବା ମଞ୍ଜି ପରି †।"

ରାମଚନ୍ଦ୍ର ମଧ୍ୟ ଯେତେବେଳେ ନିଜର ମାଆଙ୍କୁ ବନବାସର ଖବର ଦେବାକୁ ଗଲେ, ସେତେବେଳେ କହିଛନ୍ତି—"ଦେବୀ !

---

* ପିତ୍ର୍ୟମଂଶଂ ମହାବାହୋ ନିମଗ୍ନଂ ପୁନରୁଦ୍ଧର ।
ସାମ୍ନା ଭେଦେନ ଦାନେନ ଦଣ୍ଡେନାଥ ନୟେନ ବା ॥
—ଉଦ୍ୟୋଗ ପର୍ବ, ୧୩୨।୩୨

† ଇଦଂ ତୁ ଦୁଃଖଂ ଯଦନର୍ଥକାନି ମେ ବ୍ରତାନି ଦାନାନି ଚ ସଂଯମାଶ୍ଚହି ।
ତପଶ୍ଚ ତପ୍ତଂ ଯଦପତ୍ୟକାମ୍ୟୟା ସୁନିଷ୍ଫଳଂ ବୀଜମିବୋପ୍ତମୂଷରେ ॥

ତୁମକୁ ଜଣା ନାହିଁ, ବଡ଼ ଦୁଃଖ ଉପସ୍ଥିତ ହୋଇଗଲା, ଯେଉଁଥିରେ ତୁମେ, ସୀତା ଓ ଲକ୍ଷ୍ମଣଙ୍କୁ ବଡ଼ ଦୁଃଖ ହେବ । ମୁଁ ଚଉଦ ବର୍ଷ ବନରେ ରହିବ, ମୁନିଙ୍କ ପରି କନ୍ଦମୂଳ ଫଳ ଖାଇବ, ମାଂସ ତ୍ୟାଗ କରିବାକୁ ପଡ଼ିବ * ।” ଏପରି କି ଲକ୍ଷ୍ମଣ ରାମଙ୍କୁ କହିଛନ୍ତି— “ତୁମ ପ୍ରତି ଓ ମୋ ପ୍ରତି ଉଭୟଙ୍କର ବୈରିତା ପୋଷଣ କରି ପିତା ଦଶରଥଙ୍କର ଏପରି ଶକ୍ତି କାହିଁ ଯେ ରାଜ୍ୟ-ଲକ୍ଷ୍ମୀ ଭରତକୁ ଦେଇ-ଦେବେ ‡ ।” ଲକ୍ଷ୍ମଣଙ୍କ ଦୃଷ୍ଟିରେ ମଧ୍ୟ ରାଜ୍ୟ-ଲକ୍ଷ୍ମୀ ଏତେ ଗୁରୁତ୍ୱ-ପୂର୍ଣ୍ଣ ଯେ ଏଥିପାଇଁ ସ୍ୱୟଂ ପିତାଙ୍କୁ ମଧ୍ୟ ବୈରି ବୋଲି କହିବାକୁ ପଛାଇ ନାହାନ୍ତି ।

ସ୍ୱୟଂ ରାମ ମଧ୍ୟ ରାଜ୍ୟ ପ୍ରତି ବିମୁଖ ନ ଥିଲେ । ଯେତେବେଳେ ବିରାଧ (ସାରପୁଧ) ସୀତାଙ୍କୁ ଧରିନେଲା,ସେତେବେଳେ ସେ କୈକେୟୀଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ—“କୈକେୟୀ ମୋ ପାଇଁ ଯେଉଁ ମନ୍ଦ ଚାହିଁଥିଲେ ଓ ନିଜ ପାଇଁ ଯେଉଁ ଭଲ ଚାହିଁଥିଲେ, ତାହାସବୁ ଭଲଭାବେ ଘଟିଗଲା । ଦୀର୍ଘଦର୍ଶିନୀ କୈକେୟୀ ତାଙ୍କ ପୁଅକୁ ନିଜ ରାଜ୍ୟ

---

* ଦେବ ! ନୂନଂ ନ ଜାନୀତେ ମହଦ୍ ଭୟମୁପସ୍ଥିତମ୍ ।
ଇଦଂ ତ ତବ ଦୁଃଖାୟ ବୈଦେହ୍ୟା ଲକ୍ଷ୍ମଣସ୍ୟ ଚ ॥
ଚତୁର୍ଦ୍ଦଶ ହି ବର୍ଷାଣି ବତ୍ସ୍ୟାମି ବିଜନେ ବନେ ।
କନ୍ଦମୂଳଫଳୈର୍ଜୀବନ୍ ହିତ୍ୱା ମୁନିବଦାମିଷମ୍ ।
—ଅଯୋଧ୍ୟା କାଣ୍ଡ, ୨୦।୨୭-୨୯

‡ ତ୍ୱୟା ଚୈବ ମୟା ଚୈବ କୃତ୍ୱା ବୈରମନୁତ୍ତମମ୍ ।
କାସ୍ୟ ଶକ୍ତିଃ ଶ୍ରିୟଂ ଦାତୁଂ ଭରତାୟାରିଶାସନ ।
—ଅଯୋଧ୍ୟା କାଣ୍ଡ, ୨୧।୧୫

ମିଳିବାରେ କେବଳ ସନ୍ତୁଷ୍ଟା ନୁହନ୍ତି, ମୋତେ ବନକୁ ମଧ୍ୟ ପଠାଇ ଦିଆଗଲା ; ଏଥିରେ ମଧ୍ୟ ସେ ସଫଳମନୋରଥ ହୋଇଗଲେ । ପିତାଙ୍କ ବିନାଶ ଓ ରାଜ୍ୟହରଣଠାରୁ ମଧ୍ୟ ଅଧିକ ଦୁଃଖ ମୋତେ ହେଲା ଯେ ସୀତାଙ୍କୁ ଅନ୍ୟ କେହି ନେଇ ଚାଲିଗଲା * ।" ଏଠାରେ ରାମ ପରୋକ୍ଷରେ ସ୍ୱୀକାର କରିଛନ୍ତି ଯେ ରାଜ୍ୟ ହରଣରେ ବି ତାଙ୍କର କଷ୍ଟ ହୋଇଛି ।

କିନ୍ତୁ ଗୋଟିଏ ମାତ୍ର ଘଟଣାରେ ରାଜ୍ୟପ୍ରାପ୍ତିର ନିସ୍ପୃହତା ଦେଖାଯାଏ—ଭରତ ଚରିତରେ । କିନ୍ତୁ ରାମଙ୍କର ମଧ୍ୟ ଭରତଙ୍କର ନିସ୍ପୃହତାରେ ପୂରା ବିଶ୍ୱାସ ନାହିଁ, କୈକେୟୀଙ୍କ ପ୍ରତି ତ ଅବିଶ୍ୱାସ ପ୍ରବଳ । ସେ ଲକ୍ଷ୍ମଣଙ୍କୁ କହୁଛନ୍ତି ଯେ ତୁମେ ଯଦି ମୋ ସାଥିରେ ବନକୁ ଚାଲିଯିବ, ତେବେ କୌଶଲ୍ୟା ଆଉ ସୁମିତ୍ରାଙ୍କର ସେବା କିଏ କରିବ ? "ରାଜା ଅଶ୍ୱପତିଙ୍କ ପୁତ୍ରୀ କୈକେୟୀ ଏହି ରାଜ୍ୟକୁ ପାଇ ନିଜ ସଉତୁଣୀଙ୍କ ପ୍ରତି ଭଲ ବ୍ୟବହାର କରିବେ ନାହିଁ ଓ ରାଜ୍ୟ ପାଇ କୈକେୟୀଙ୍କ ପାଖରେ ଗୁଡ଼ି ଯାଉଥିବା ଭରତ ମଧ୍ୟ ନିତାନ୍ତ ଦୁଃଖିତ କୌଶଲ୍ୟା ତଥା ସୁମିତ୍ରାଙ୍କୁ ମନେ ରଖିବେ

---

* ଯଦଭିପ୍ରେତମସ୍ମାସୁ ପ୍ରିୟଂ ବରବୃତଂ ଚ ଯତ୍ ।
କୈକେୟ୍ୟାସ୍ତୁ ସୁସଂବୃତ୍ତଂ କ୍ଷିପ୍ରମଦ୍ୟୈବ ଲକ୍ଷ୍ମଣ ॥
ସା ହି ତୁଷ୍ୟତି ରାଜ୍ୟେନ ପୁତ୍ରାର୍ଥେ ଦୀର୍ଘଦର୍ଶିନୀ ।
ଯୟାହଂ ସର୍ବଭୂତାନାଂ ପ୍ରିୟଃ ପ୍ରସ୍ଥାପିତୋ ବନମ୍ ॥
ଅଦ୍ୟେଦାନୀଂ ସକାମା ସା ଯା ମାତା ମଧ୍ୟମା ମମ ।
ପରସ୍ପର୍ଶାତ୍ତୁ ବୈଦେହ୍ୟା ନ ଦୁଃଖତରମସ୍ତି ମେ ॥
ପିତୁର୍ବିନାଶାତ୍ସୌମିତ୍ରେ ସ୍ୱରାଜ୍ୟହରଣାତ୍ତଥା ॥
—ଅରଣ୍ୟ, ୨।୧୮-୨୧

ନାହିଁ * ।" ଏହା ପୂର୍ବରୁ ରାମ ସୀତାଙ୍କୁ ବୁଝାଇ କହିଛନ୍ତି ଯେ ମୋର ବନ ଗମନ ପରେ "ତୁମେ ଭରତଙ୍କ ନିକଟରେ ମୋର ପ୍ରଶଂସା କରିବ ନାହିଁ । କାରଣ ଐଶ୍ୱର୍ଯ୍ୟଶାଳୀ ଲୋକ ଅନ୍ୟର ସ୍ତୁତିକୁ ସହିପାରନ୍ତି ନାହିଁ, ଏଥିପାଇଁ ତୁମେ ଭରତ ଆଗରେ ମୋର ଗୁଣ ବର୍ଣ୍ଣନା କରିବ ନାହିଁ । ଭରତ ପାଖରେ ଅନୁକୂଳ ଢଙ୍ଗରେ ରହି ତୁମେ କାଳ କଟାଇବ ଇତ୍ୟାଦି § ।"

ଏହିସବୁ ଉଦାହରଣ ବ୍ୟତୀତ ଅନ୍ୟାନ୍ୟ ଉଦାହରଣରୁ ମଧ୍ୟ ଏହା କୁହାଯାଇପାରେ ଯେ ରାମାୟଣ ଓ ମହାଭାରତର ମୁଖ୍ୟ ଚରିତ କିମ୍ବା ଆଦର୍ଶ ଚରିତମାନେ ଧନ, ମାନ, ଐଶ୍ୱର୍ଯ୍ୟକୁ କେନ୍ଦ୍ର କରି ଗତି କରିଛନ୍ତି । କେହିହେଲେ ଏଥିରୁ ମୁକ୍ତ ନୁହନ୍ତି ।

---

* ସା ହି ରାଜ୍ୟମିଦଂ ପ୍ରାପ୍ୟ ନୃପସ୍ୟାଶ୍ୱପତେଃ ସୁତା ।
ଦୁଃଖିତାନାଂ ସପତ୍ନୀନାଂ ନ କରିଷ୍ୟତି ଶୋଭନମ୍ ॥
ନ ସ୍ମରିଷ୍ୟତି କୌଶଲ୍ୟାଂ ସୁମିତ୍ରାଂ ଚ ସୁଦୁଃଖିତାମ୍ ।
ଭରତୋ ରାଜ୍ୟମାସାଦ୍ୟ କୈକେୟ୍ୟାଂ ପର୍ଯ୍ୟବସ୍ଥିତଃ ॥
— ଅଯୋଧ୍ୟା କାଣ୍ଡ, ୩୧।୧୩-୧୪ ।

§ ଭରତସ୍ୟ ସମୀପେ ତେ ନାହଂ କଥ୍ୟଃ କଦାଚନ ।
ଋଦ୍ଧିଯୁକ୍ତା ହି ପୁରୁଷା ନ ସହନ୍ତେ ପରସ୍ତବମ୍ ॥
ତସ୍ମାନ୍ନ ତେ ଗୁଣାଃ କଥ୍ୟା ଭରତସ୍ୟାଗ୍ରତୋ ମମ ।
ଅହଂ ତେ ନାନୁବକ୍ତବ୍ୟୋ ବିଶେଷେଣ କଦାଚନ ॥
ଅନୁକୂଳତୟା ଶକ୍ୟଂ ସମୀପେ ତସ୍ୟ ବର୍ତ୍ତିତୁମ୍ ।
ତସ୍ମୈ ଦତ୍ତଂ ନୃପତିନା ଯୌବରାଜ୍ୟଂ ସନାତନମ୍ ॥
— ଅଯୋଧ୍ୟା କାଣ୍ଡ, ୨୬।୨୪-୨୭ ।

ଭାରତୀୟ ସଂସ୍କୃତି ପୂର୍ବାପୂର ପରଲୋକ-ପରାୟଣ ବୋଲି ଯେଉଁମାନେ କହିଥାନ୍ତି, ସେମାନଙ୍କ ଲାଗି ଉପରୋକ୍ତ ଉଦାହରଣ ପର୍ଯ୍ୟାପ୍ତ ମନେହୁଏ । ରାମାୟଣ-ମହାଭାରତକାର ମନୁଷ୍ୟ-ଜୀବନକୁ ଯଥାର୍ଥ ଦୃଷ୍ଟିରେ ଦେଖିଛନ୍ତି । ଭୌତିକ କର୍ମକାଣ୍ଡକୁ କେନ୍ଦ୍ର କରି ଯେଉଁ ନୀତି ଅନୀତିର ବା ଧର୍ମ ଅଧର୍ମର ବ୍ୟାଖ୍ୟା ଏହି ଦୁଇ ମହାଗ୍ରନ୍ଥରେ ସନ୍ନିବେଶିତ ହୋଇଛି, ତାହା ପରସ୍ପର ଏତେ ଦ୍ୱନ୍ଦ୍ୱବିରୋଧପୂର୍ଣ୍ଣ ଯେ ସେ ଧର୍ମ ଅଧର୍ମର ବିଚାର ସବୁ ଯୁଗରେ ସବୁ ଦ୍ୱନ୍ଦ୍ୱବିରୋଧର ନିୟମରେ ପ୍ରଯୁକ୍ତ ହୋଇପାରେ । ନୈତିକତାର ଏକ ପରିବର୍ତ୍ତନଶୀଳ ଗତିଶୀଳତା ରହିଛି । ତାହାର ଆଲୋଚନା ଲାଗି ଏ କ୍ଷେତ୍ର ଉଦ୍ଦିଷ୍ଟ ନ ଥିବାରୁ ସେଥିରୁ ବିରତ ହେବାକୁ ପଡ଼ୁଛି ।



# ମହାଭାରତୀୟ ସଂସ୍କୃତିର ଦୀର୍ଘତାର କାରଣ

( ଏକ ଐତିହାସିକ ଅଧ୍ୟୟନାତ୍ମକ ଆଲୋଚନା )

ଦୁଇଟି ବିରୋଧୀ ବର୍ଗ ବା ଶ୍ରେଣୀ ବିଭାଜିତ ହୋଇଯିବା ପରେ ସମାଜର ଶାସନ-ଯନ୍ତ୍ର ଦାସ ଓ ନିର୍ଦ୍ଧନମାନଙ୍କୁ କରଗତ ରଖିବାର ଯେ କୌଣସି ବନ୍ଦୋବସ୍ତର ଆଉ ତ୍ରୁଟି କରି ନାହିଁ । କିନ୍ତୁ ତାହା ହେଲେ ମଧ୍ୟ ଭିନ୍ନ ଭିନ୍ନ ଧନିକ ସଂପ୍ରଦାୟ ମଧ୍ୟରେ ସ୍ୱାର୍ଥ-ସଂପର୍କିତ ବିରୋଧିତା ସେତେବେଳେ କ୍ରମଶଃ ପ୍ରବଳ ହୋଇଥାଏ । ଧନିକମାନଙ୍କର ବିଭିନ୍ନ ସଂପ୍ରଦାୟ ସେହି ସମୟରେ ଦେଶର ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ହୋଇ ବାସ କରନ୍ତି । ଏବଂ ଭୌଗୋଳିକ ପ୍ରଦେଶଗୁଡ଼ିକ ହିଁ ସେତେବେଳର ବିଭିନ୍ନ ରାଜ୍ୟ ଏବଂ ତାହାର ଶାସନକର୍ତ୍ତାମାନେ ସେହିସବୁ ଅଞ୍ଚଳର ସାମନ୍ତ ଅଥବା ରାଜାରେ ପରିଣତ ହୋଇଥାନ୍ତି । ଅନ୍ୟର ରାଜତ୍ୱ ପ୍ରତି ଲୋଭଲିପ୍ସା ଥିବାରୁ ଏଇସବୁ ରାଜ୍ୟ ଓ ରାଜାମାନଙ୍କର ଯୁଦ୍ଧବିଗ୍ରହ କେବେ-ହେଲେ ବନ୍ଦ ହୁଏ ନାହିଁ । ସେତେବେଳର ଯୋଦ୍ଧୃ ସଂପ୍ରଦାୟ ଜନଯୁଗୀୟ ଗୋଷ୍ଠୀ କ୍ଷୁଦ୍ର କ୍ଷୁଦ୍ର ନ ଥିଲେ—ପାର୍ଶ୍ୱବର୍ତ୍ତୀ ଶତ୍ରୁର ସୈନ୍ୟବଳ ବୃଦ୍ଧି ପ୍ରତ୍ୟେକ ରାଜ୍ୟକୁ ହିଁ ସେତେବେଳେ ନିଜ ନିଜର

ବାହିନୀ ପ୍ରସ୍ତୁତ କରିବାକୁ ହେଉଥିଲା । ପ୍ରାଚୀନ ଯୁଗର ଗୋଷ୍ଠୀ ଯୁଦ୍ଧରେ ପ୍ରତ୍ୟେକ ସେନାନୀ ନିଜେ ହିଁ ନିଜର ନାୟକ ଥିଲେ । ସେତେବେଳେ ବାହିନୀ ନ ଥିଲା । ଏଥିପାଇଁ ସେନାନାୟକମାନଙ୍କର ମଧ୍ୟ ପ୍ରୟୋଜନ ନ ଥିଲା । ଆଦିମ ଅସ୍ତ୍ରଶସ୍ତ୍ର ନେଇ ପ୍ରତ୍ୟେକ ହିଁ ବ୍ୟକ୍ତିଗତ କୌଶଳ ଓ ବୀରତ୍ୱରେ ଯୁଦ୍ଧ କରୁଥିଲେ । ଏକକୋଷ ବା ସେଲ (cell) ବିଶିଷ୍ଟ ପ୍ରାଣୀର ଶରୀରଗଠନା ଯେପରି ଅନାୟାସ ହୁଏ, ପ୍ରାଚୀନ ଯୁଗର ଯୋଦ୍ଧାମାନଙ୍କର ମଧ୍ୟ ସେତେବେଳର ଗୋଷ୍ଠୀ-ସଂଘର୍ଷରେ ସେହିପରି ସୁବିଧା ହେଉଥିଲା । କିନ୍ତୁ ଏଇ ଯୁଗରେ * ସେମାନଙ୍କ ସଂଖ୍ୟା ଶତସଂଖ୍ୟକ ଅଙ୍କକୁ ଛାଡ଼ି ଦେଖୁ ଦେଖୁ ସହସ୍ରାଧିକରେ ପହଞ୍ଚିଯାଏ— ଆଉ ଯୁଦ୍ଧକ୍ଷେତ୍ରରେ ବହୁତର ନୂତନ ଓ ଉନ୍ନତ ଧରଣର ଅସ୍ତ୍ରପାତିର ମଧ୍ୟ ବ୍ୟବହାର ହୋଇଥାଏ । ସୈନିକମାନଙ୍କ ମଧ୍ୟରେ ଜଣେ ଅସ୍ତ୍ରଶିକ୍ଷା, ସଂଗଠନ ଏବଂ ସାମୂହିକ ଶକ୍ତି ପ୍ରୟୋଗର କୌଶଳ ଆୟତ୍ତ କରିବାର ପ୍ରୟୋଜନୀୟତା ପଡ଼େ ଏବଂ ଏହା ଫଳରେ ସେନାବାହିନୀ ପାଇଁ ନୂତନ କରି ନାୟକୋଚିତ ଗୁଣସମ୍ପନ୍ନ ସେନାଧିକର ମଧ୍ୟ ଆବଶ୍ୟକ ହୁଏ । ପିତୃସତ୍ତ୍ୱ ଯୁଗରେ, କୁହାଯାଇପାରେ, ଏଇସବୁ ସୈନ୍ୟ ନେତାମାନଙ୍କର ପାଠଶାଳାରୁ ଶିକ୍ଷା ଏକ ପ୍ରକାର ଶେଷ ହୋଇଯାଉଥିଲା । ସେତେବେଳେ ସୈନ୍ୟଦଳ ଗଠନର କ୍ଷମତା-ସଂପନ୍ନ ବ୍ୟକ୍ତି ହିଁ ଯେ ସମାଜରେ ନେତୃତ୍ୱ କରିବା ଅଧିକାରର ସୁବିଧା ପାଉଥିଲେ, ସେଥିରେ ସନ୍ଦେହ ନାହିଁ । ତଦୁପରି ପରସ୍ୱ ଲୁଣ୍ଠନର ଲାଭ ଓ ଲୋଭ ‡ ମନୁଷ୍ୟକୁ ସେତେବେଳେ ନିତ୍ୟ

---

* ଅର୍ଥାତ୍ ସାମନ୍ତବାଦୀ ଯୁଗରେ ପହଞ୍ଚି ।

‡ ତୁଳସୀ ଦାସ କହିଛନ୍ତି—ଜିମି ପ୍ରତି ଲାଭ ଲୋଭ ଅଧିକାଇ— ଅର୍ଥାତ୍ ଲାଭ ଯେତେ ଅଧିକ ହୁଏ, ଲୋଭ ମଧ୍ୟ ତେତେ ବଢ଼ିଯାଏ ।

ସ୍କନ୍ଧରେ ଓ ସମସ୍ତଭୂସାନରେ ଅକୃଷ୍ଟ ଜଟ ନେଇଥିଲା । ବୁଦ୍ଧଙ୍କର ଏକ ସମସାମୟିକ ରଜାଙ୍କ ଉପାଖ୍ୟାନରୁ ଆମେ ଏଇ ମନୋବୃତ୍ତିର ପ୍ରକୃତ ସ୍ୱରୂପ ବୁଝିପାରିବା । ବୁଦ୍ଧ ଶିଷ୍ୟ ରଟ୍ଠପାଳ * କୁରୁ-ଦେଶରେ § ରଜା କୌରବ୍ୟଙ୍କୁ ପଚାରିଛନ୍ତି :—

"ତୁମର ଜଣେ ବିଶ୍ୱାସୀ ଓ ଶ୍ରଦ୍ଧେୟ ପୁରୁଷ ପୂର୍ବ ଦିଗରୁ ଆସି କହିଲେ, "ମହାରଜ, ମୁଁ ପୂର୍ବ ଦିଗରୁ ଆସିଅଛି··· ସେଠାରେ ଗୋଟିଏ ସମୃଦ୍ଧ ଜନବହୁଳ ଦେଶ ଦେଖିଆସିଲି··· ସେଥିରେ ଅଗଣିତ ଅଶ୍ୱ, ଗଜ, ରଥ, ପଦାତିକ···ଅଗଣିତ ଗଜଦନ୍ତ, ମୃଗଚର୍ମ···ଏବଂ ଅଜସ୍ର ସୁବର୍ଣ୍ଣ † ······ବହୁ ସୁଲଭ ଲାବଣ୍ୟବତୀ ନାରୀ······ମହାରଜ, ଏତେ ସୈନିକ ହେଲେ ଆପଣ ଏଇ ଦେଶ ଜୟ କରିପାରିବେ···ବିଜୟୀ ହୁଅନ୍ତୁ ରଜା !"

—"ତା'ହେଲେ ତୁମେ କ'ଣ କରିବ ରଜା ?···"

"ମୁଁ ତାହା ମଧ୍ୟ ଜୟ କରି ମୋର ରଜ୍ୟର ଅନ୍ତର୍ଭୁକ୍ତ କରିନେବି ।"

ରଜା କୌରବ୍ୟଙ୍କ ଉତ୍ତର ସାମନ୍ତ ଯୁଗର ତୀବ୍ର ଅତୃପ୍ତ ଲୋଭର ଗୋଟିଏ ଚମତ୍କାର ଉଦାହରଣ । କୌଣସି ଦେଶ ସହିତ ଶତ୍ରୁତା ଥାଉ ବା ନ ଥାଉ କିମ୍ବା ସେଇ ଦେଶର ଲୋକେ କୌଣସି କ୍ଷତି ବା ଅହିତ କରନ୍ତୁ ବା ନ କରନ୍ତୁ—କିନ୍ତୁ ଧନ,

---

* ରଟ୍ଠପାଲ ସୁତ୍ତ (ମଜ୍ଝିମନିକାୟ, ୨୧୨) ।

§ ମେରଠ ଜିଲ୍ଲା ।

† ପ୍ରାକୃତିକ ଓ ନିର୍ମିତ ଉଭୟବିଧ ।

ସୁବର୍ଣ୍ଣ କମ୍ବା ସୁନ୍ଦରୀ ସ୍ତ୍ରୀର ଅଧିକାରୀ ହେଲେ ତାହାର ମଧ୍ୟ ନସ୍ତାର ନାହିଁ । ଜନଯୁଗରେ ଅବଶ୍ୟ ଯୁଦ୍ଧ ହେଉଥିଲା । କିନ୍ତୁ ତାହା ପ୍ରାୟ ସମଗ୍ର ସମାଜର ସୁରକ୍ଷା ଓ ଲାଭ ପାଇଁ ହେଉଥିଲା * । ରାଜା କୌରବ୍ୟଙ୍କ ପରି କେବଳ ପରଧନ ଓ ପରସ୍ତ୍ରୀ ଲାଳସାରେ ସେତେବେଳେ କେହି ଯୁଦ୍ଧ କରୁ ନ ଥିଲେ । କିନ୍ତୁ ବୈକ୍ତିକ ସଂପତ୍ତିର ବଂଶାନୁକ୍ରମିକ ପ୍ରଭାବର ପରେ ଲୋକନାୟକ ମଧ୍ୟ ଲୋଭାନ୍ଧ ହୋଇ ପଡ଼ିଥିଲେ । ତେଣୁ ଲୋଭର ପ୍ରବୃତ୍ତି କରି ସକଳ ପ୍ରକାର କାର୍ଯ୍ୟ ହିଁ ସାମନ୍ତ ସମାଜରେ ନ୍ୟାଯ୍ୟ ବୋଲି ଗୃହୀତ ହୋଇଅଛି । ଯୁଦ୍ଧରେ ବିଜୟ ଲାଭ ଫଳରେ ସେନାନାୟକ ସେତେବେଳେ କେବଳ ବୀରତାର ହିଁ ଖ୍ୟାତି ଲାଭ କରୁ ନ ଥିଲେ—ଯୁଦ୍ଧଜୟ ଫଳରେ ସେମାନଙ୍କର ବୈକ୍ତିକ ସଂପତ୍ତି ଏବଂ ଶାସନାଧିକାର ବୃଦ୍ଧିର ମଧ୍ୟ ବହୁ ସୁବିଧା ହେଉଥିଲା । ଏହି ଭାବରେ ସେନାନାୟକ ସାମନ୍ତମାନେ ଏହି ଯୁଗକୁ ଆସି ସମଗ୍ର ଶାସନ ସୂତ୍ରର କର୍ଣ୍ଣଧାର ହୋଇ ବସନ୍ତି ଏବଂ ପରେ ଏହି ଶାସନ କ୍ଷମତା ହିଁ ଆନୁବଂଶିକ ହୋଇ ସମାଜରେ ରାଜତନ୍ତ୍ରର ପ୍ରତିଷ୍ଠା କରେ ।

ପ୍ରାଚୀନ ମିଶର, ମେସୋପଟାମିଆ ବା ସିନ୍ଧୁ ଉପତ୍ୟକାର ସଭ୍ୟତାରେ ପିତୃସତ୍ତା ଯୁଗର ନାୟକମାନେ § ରାଜତନ୍ତ୍ରର ସ୍ରଷ୍ଟା ହେଲେ । କିନ୍ତୁ ପରବର୍ତ୍ତୀ ୟୁନାନୀ ‡ ଓ ଭାରତୀୟ ଏବଂ ସମ୍ଭବତଃ

* ଅର୍ଥାତ୍ ସେହି ଯୁଦ୍ଧର ସ୍ୱାର୍ଥ ବୈକ୍ତିକ ହୋଇ ନ ଥିଲା ।

§ ଅର୍ଥାତ୍ ପିତୃସତ୍ତା ଓ ଦାସ ଯୁଗର ସେନାନାୟକମାନେ ।

‡ ଗ୍ରୀସୀୟ ।

ଆର୍ଯ୍ୟ ସମାଜ ମଧ୍ୟରେ ରାଜତନ୍ତ୍ର ଓ ପ୍ରଜାତନ୍ତ୍ର—ଏହି ଦୁଇ ଧାରାରେ ହିଁ ସମାଜର ବିକାଶ ହୋଇଥିଲା । ଭାରତରେ ଥିବା ଜନ, ଗଣ, ରାଜ୍ୟ ଇତ୍ୟାଦି ଜାତି ସହିତ ନୂତନ ନିତ୍ୟ ଆଗତ ଜାତିର ମିଶ୍ରଣ ନ ହୋଇଥିଲେ ଏଠାରେ ବର୍ଣ୍ଣଭେଦ ଏତେ ଜଟିଳ ହୋଇ ନ ଥାନ୍ତା ଏବଂ ତାହା ନ ହୋଇଥିଲେ ହୁଏ ତ ବା ପ୍ରଜାତନ୍ତ୍ର କିମ୍ବା ଗଣପରମ୍ପରା ମଧ୍ୟ ଏଠାରେ ଏତେ ବିସ୍ମୃତ ହୋଇ ନ ଥାନ୍ତା···।

ସାମନ୍ତଯୁଗରେ ମାନବ ସଂସ୍କୃତିର ପ୍ରକୃତ ବିକାଶ ହୋଇଥିଲା—ପଶ୍ଚାଦ୍‌ବର୍ତ୍ତୀ ଯୁଗଠାରୁ ଏହି ସମୟରେ ବିକାଶର ବେଗ ମଧ୍ୟ ତୀବ୍ର । କିନ୍ତୁ ଏହା ନ ହେବ ବା କାହିଁକି ? ଜୀବନ ସେତେବେଳେ କେବଳ ଆବଶ୍ୟକ ବସ୍ତୁ ସଂଗ୍ରହ କରିବାରେ ହିଁ ବ୍ୟାପୃତ ହୋଇଯାଉ ନ ଥିଲା । ଏହି କାମ ପାଇଁ ସାମନ୍ତ ଯୁଗରେ ଦାସ ଓ ଶ୍ରମିକର ଫୌଜ ସଜା ମହଜୁଦ୍ ଥିଲେ । ଏହି ଭାବରେ ଅନ୍ୟ ବର୍ଗ ବା ଶ୍ରେଣୀର ଶ୍ରମ ସାହାଯ୍ୟରେ ଭଦ୍ରଜନ ବା ଶିଷ୍ଟଜନମାନଙ୍କ ନିକଟରେ ଉତ୍ପାଦନ ଶ୍ରମ ନିନ୍ଦିତ ହୁଏ । ବସ୍ତୁସଂଗ୍ରହ * ଚିନ୍ତାରୁ ମୁକ୍ତି ପାଇ ଭଦ୍ରମାନେ ସାହିତ୍ୟ, କଳା, ଦର୍ଶନ ପ୍ରଭୃତି ବ୍ୟାପାରରେ ସମୟ ଓ ଶ୍ରମ ନିୟୋଗ କରନ୍ତି । ଦାସ ଓ ଶ୍ରମିକର ଶ୍ରମ ସୃଷ୍ଟ ସମୃଦ୍ଧି ଉପରେ ‡ ଏହି ଭାବରେ ହିଁ ସମାଜରେ ସଂସ୍କୃତିର ଭିତ୍ତି

---

* ଜୀବନଧାରଣ ପକ୍ଷରେ ଆବଶ୍ୟକ ଜିନିଷପତ୍ର ।

‡ ଏମାନେ ନିଜେ ଅଭୁକ୍ତ ରହି ଏବଂ ବହୁ କ୍ରୂର ଯାତନା ସହ୍ୟ-କରି ସମାଜ ପାଇଁ ଧନ ସୃଷ୍ଟି କରିଛନ୍ତି; ଆଉ ପ୍ରଭୁବର୍ଗ ସେହି ଧନରେ ସମୃଦ୍ଧ ହୋଇ ସମାଜରେ କଳା, ଦର୍ଶନ ପ୍ରଭୃତିର ସୂକ୍ଷ୍ମ ଚର୍ଚ୍ଚା ଚଳାଇଛନ୍ତି ।

ସ୍ଥାପିତ ହୁଏ ; କିନ୍ତୁ ଆଶ୍ଚର୍ଯ୍ୟ ଏଇଆ ଯେ ଏଥିରେ ଦାସ ବା ଶ୍ରମିକରେ କୃତିର କଥା ଇତିହାସ ମୋଟେ ହିଁ ସ୍ମରଣ ରଖେ ନାହିଁ— ଏପରି କି ଅନେକ କ୍ଷେତ୍ରରେ ପ୍ରଭୁର ସୃଷ୍ଟିର ଗୌରବରେ ଶ୍ରମିକ ମଧ୍ୟ ନିଜର ଶ୍ରେଣୀସ୍ୱାର୍ଥ ଭୁଲିଯାଇଛି (୫୮) ।

ଭାରତରେ ମହାଭାରତ ଯୁଗଠାରୁ ଆରମ୍ଭ କରି ପରବର୍ତ୍ତୀ ହିନ୍ଦୁ ରାଜତ୍ୱ ପର୍ଯ୍ୟନ୍ତ ଏଠାରେ ଶାସକ ଓ ରାଜାଙ୍କ ପାଇଁ ପ୍ରଜାର କାର୍ଯ୍ୟିକ ଶ୍ରମ ଓ ଜୀବନର ଶ୍ରେଷ୍ଠାଂଶ ଉତ୍ସର୍ଗ କରିବାକୁ ବହୁ ଧର୍ମୋପଦେଶ ଦିଆହୋଇ ଆସିଛି । ଏଠାରେ ରାଜା କ୍ରମେ ଦେବତାରେ ପରିଣତ ହୋଇଛନ୍ତି । କିନ୍ତୁ ପ୍ରଜାର ଅଧିକାର ତାଲିକାରେ ପରଜନ୍ମ ବା ପରଲୋକର ସ୍ୱର୍ଗ ସ୍ୱପ୍ନ ଛଡ଼ା ଆଉ କିଛିର ନିର୍ଦ୍ଦେଶ ଦିଆ ଯାଇ ନାହିଁ । ଏହି ଭାବରେ ଭାରତୀୟ ଶାସ୍ତ୍ରକାର ମଧ୍ୟ ସମାଜର ଅସାମ୍ୟକୁ ଲିପିବଦ୍ଧ କରି ତାହା ଉପରେ ଏକ ଆକର୍ଷକ ଧାର୍ମିକ ଆସ୍ତରଣ ବିଛାଇ ଦେଇଛନ୍ତି । ଏହି ପ୍ରକାର ଧାର୍ମିକ କ୍ରିୟାନୁଷ୍ଠାନ ବିରୁଦ୍ଧରେ ପରବର୍ତ୍ତୀ ଯୁଗରେ ବୌଦ୍ଧଧର୍ମର ଉତ୍ପତ୍ତି ଓ ବିକାଶ ହୋଇଛି । ସମାଜକୁ ଦେହ-ସର୍ବସ୍ୱ ପୁରୁଷ କଳ୍ପନା କରି ସମାଜର ବିଭିନ୍ନ ଶ୍ରେଣୀକୁ ତାହାର ପ୍ରତ୍ୟଙ୍ଗ କଳ୍ପନା କରିବାର ଉଦ୍ଦେଶ୍ୟ ହେଉଛି, ଶ୍ରେଣୀ-ଦ୍ୱେଷକୁ ନରମ କରିଦେବା । ଏଇ ଚେଷ୍ଟାରେ ବେଦର ପୁରୁଷ-ସୂକ୍ତରେ ଲେଖା ହୋଇଛି— "ବ୍ରାହ୍ମଣ ଏହାର ମୁଖ, ରାଜନ୍ୟ ଭୁଜ, ବୈଶ୍ୟ ଜଙ୍ଘ ଏବଂ ଶୂଦ୍ର ଏହାର ପାଦ ।" ଗୀତା ପ୍ରଭୃତି ପରବର୍ତ୍ତୀ ଗ୍ରନ୍ଥରେ ସ୍ୱଧର୍ମେ ନିଧନକୁ ଶ୍ରେୟ ବୋଲି ପୁରୁଷ ସୂକ୍ତର ଉଦ୍ଦେଶ୍ୟକୁ ହିଁ ପକ୍କା କରିଯାଇଛି ।

ଆର୍ଯ୍ୟ ଓ ଅନାର୍ଯ୍ୟଙ୍କ ମଧ୍ୟରେ କିଏ ଶାସକ ହେବେ—ଏଥିପାଇଁ ଯୁଦ୍ଧବିଗ୍ରହ ପଞ୍ଜାବ ଅଞ୍ଚଳରୁ ହିଁ ଶେଷ ହୋଇଯାଇଛି । ତାହା ପରେ ଗଙ୍ଗାତଟରେ ପହଞ୍ଚି ପହଞ୍ଚି ସମସ୍ତ ଆର୍ଯ୍ୟ-ଭିନ୍ନ ଜାତି ହିଁ ଯୁଦ୍ଧର ବ୍ୟର୍ଥତା ବୁଝିପାରି ଅସ୍ତ୍ରତ୍ୟାଗ କରିଛନ୍ତି । ପରେ ଧୀରେ ଧୀରେ ଶାସକମାନଙ୍କ ସ୍ୱାର୍ଥ ଓ ଆଦେଶ ଅନୁସାରେ ସେମାନେ ନିର୍ବିଘ୍ନ ଜୀବନ-ଯାପନ ପାଇଁ ପ୍ରସ୍ତୁତ ହୋଇଛନ୍ତି । ଏଥିପାଇଁ ଗଙ୍ଗାତଟର ଜୀବନଯାତ୍ରା ସେତେବେଳେ ଯଥେଷ୍ଟ ସମୃଦ୍ଧ ଥିଲେ ମଧ୍ୟ ସାଧାରଣ ସଂପ୍ରଦାୟର ସେଥିରେ ବିଶେଷ ଲାଭ ହୋଇ ନାହିଁ । ରାଜ୍ୟର ସକଳ ଐଶ୍ୱର୍ଯ୍ୟ ସେହି ସମୟରେ ପାର୍ଥିବ ଶାସକ କ୍ଷତ୍ରିୟ ଏବଂ ବୈଦିକ ଶାସକ ବ୍ରାହ୍ମଣ—ଏହି ଦୁଇ ସଂପ୍ରଦାୟର ହସ୍ତଗତ ହୋଇପଡ଼ିଛି । ଭାରତ-ବର୍ଷରେ ଏହି ବୈଦିକ ଶାସକ ଅର୍ଥାତ୍ ପୁରୋହିତ ବା ବ୍ରାହ୍ମଣ-ଶ୍ରେଣୀକୁ ଆମେ ଗଙ୍ଗାର ଉର୍ବର ମୃତ୍ତିକାର ଉପଜ କହିପାରୁ । ଏହି ସ୍ଥାନକୁ ଆସି ଆର୍ଯ୍ୟମାନଙ୍କ ମଧ୍ୟରେ ବ୍ରାହ୍ମଣ ଓ କ୍ଷତ୍ରିୟ ଏହି ଦୁଇଟି ପୃଥକ ଶ୍ରେଣୀର ସୃଷ୍ଟି ହୋଇଥିଲା; କିନ୍ତୁ ସେତେବେଳେ ଉଭୟ ଶ୍ରେଣୀ ହିଁ ନିଜ ନିଜର ସ୍ୱାର୍ଥଗତ ବିରୋଧ ମଧ୍ୟରେ ଗୋଟିଏ ସ୍ଥାୟୀ ସମନ୍ୱୟ କରିନେବାକୁ ଚେଷ୍ଟା କରିଛନ୍ତି । ଭାରତବର୍ଷରେ ବ୍ରାହ୍ମଣ-କ୍ଷତ୍ରିୟ ଏହି ସ୍ୱାର୍ଥ ସମନ୍ୱୟ ପରବର୍ତ୍ତୀ କାଳରେ ପ୍ରାୟ ତିନି, ସାଢ଼େ ତିନି ହଜାର ବର୍ଷ ଧରି ଅକ୍ଷୁଣ୍ଣ ଥିଲା । ଭାରତୀୟ ପୁରୋହିତ ସଂପ୍ରଦାୟ ଯେ ପ୍ରଥମ ପ୍ରଥମ ନିଃସ୍ୱାର୍ଥ ଓ ଭୋଗଶୂନ୍ୟ ଜୀବନ ଯାପନ କରୁଥିଲେ, ଏହା ସଂପୂର୍ଣ୍ଣ ମିଥ୍ୟା କଥା । ବେଦ, ଉପନିଷଦ ବା ବୁଦ୍ଧକାଳୀନ ଯେ କୌଣସି ଗ୍ରନ୍ଥ ହାତକୁ ନେଇ ଦେଖନ୍ତୁ—ଦେଖିବେ, କେତେ ବଶିଷ୍ଠ-ବିଶ୍ୱାମିତ୍ର ରାଜଦତ୍ତ ଅର୍ଥ ଓ ଅନୁଗ୍ରହ ଲାଭକରି ସୁଖରେ ସପ୍ତସ୍ୱର୍ଗରେ ଅଧିଷ୍ଠାନ କରିଛନ୍ତି—ବହ୍ମି ଯାଜ୍ଞବଲ୍କ୍ୟ ଜନକଙ୍କ

ଗୋଶୃଙ୍ଗରୁ ସହସ୍ର ସ୍ୱର୍ଣ୍ଣକ୍ଷୁର  ଗାଈ ଦକ୍ଷିଣା ନେଇ ଅଶ୍ରମକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି—ଏପରି କି ଦେଖିବେ, ଋଷି ନିଜର ପତ୍ନୀଦ୍ୱୟଙ୍କ ମଧ୍ୟରେ ସଂପତ୍ତି ବଣ୍ଟନ ହେବାରୁ ଭଳି ଅବସ୍ଥାରେ ହୋଇ ପଡ଼ିଛନ୍ତି §। ଆଉ ବୁଦ୍ଧକାଳୀନ ଭାରତରେ ବ୍ରାହ୍ମଣର "ଭୋଗଶୂନ୍ୟ" ଜୀବନ ସମ୍ବନ୍ଧରେ ଜାଣିବାକୁ ହେଲେ ନିପାଠକ † ଖୋଲି ଦେଖ, ସୋନଦଣ୍ଡ, କୁଟଦନ୍ତ ପ୍ରଭୃତିରେ ଧନସଂପତ୍ତିର ବିବରଣ ପଢ଼ି ଦେଖନ୍ତୁ। ବ୍ରାହ୍ମଣର ପ୍ରାଚୀନ ଓ ତତ୍କାଳୀନ ସ୍ୱାର୍ଥର ବର୍ଣ୍ଣନା ପ୍ରସଙ୍ଗରେ ବୁଦ୍ଧ ଗୋଟିଏ ସ୍ଥାନରେ କହିଛନ୍ତି :—

"...ରାଜାର ସଂପତ୍ତି—ତାହାର ସାଳଙ୍କାର ନାରୀ, ଉତ୍ତମ ଅଶ୍ୱଯୁକ୍ତ ଓ ଚମତ୍କାର ଏବଂ ସୂଚୀକର୍ମକୃତ ରଥ, ବହୁ ପ୍ରକୋଷ୍ଠ ଅଟ୍ଟାଳିକା...ଏଇ ସମସ୍ତ ଦେଖି ବ୍ରାହ୍ମଣର ଲାଳସା ହେଲା। ବ୍ରାହ୍ମଣ ଭାବିଲା, ତାହା ପାଖରେ ମଧ୍ୟ ରାଜା ପରି ଗବାଦି ପଶୁ ଅଜସ୍ର ହେଉ, ଅଳଙ୍କୃତା ସ୍ତ୍ରୀ ଅସଂଖ୍ୟ ହୁଅନ୍ତୁ...ଏବଂ ମନୁଷ୍ୟର ଅନ୍ୟ ଭୋଗ୍ୟ ମଧ୍ୟ ଅପରିମିତ ହେଉ। ବ୍ରାହ୍ମଣ ବେଦମନ୍ତ୍ର ରଚନା କରି ଇକ୍ଷ୍ୱାକୁ ରାଜାଙ୍କ ନିକଟକୁ ଗଲା—"ତୁମେ ପ୍ରଭୂତ ଧନଧାନ୍ୟବାନ୍, ତୁମର ବିତ୍ତ ଅପରିସୀମ, ଯଜ୍ଞ କର।" ରାଜା ଅଶ୍ୱମେଧ, ପୁରୁଷମେଧ ‡

---

* ଗାଈ ଦାନ କରିବା ସମୟରେ ତାହାର ଶିଙ୍ଗ ଓ କ୍ଷୁର ବା ଖୋରକୁ ସୁନାରୂପାରେ ମୋଡ଼ି ଦିଆଯାଉଥିଲା।

§ ଋଗ୍‌ବେଦ।

† ବୁଦ୍ଧଚର୍ଯ୍ୟା ଦ୍ରଷ୍ଟବ୍ୟ।

‡ ଯେଉଁ ଯଜ୍ଞର ବଳି ହେଉଛି ପୁରୁଷ।

ବାଜପେୟ, ନରମେଧ * ପ୍ରଭୃତି ଯଜ୍ଞରେ ବାହ୍ମଣଙ୍କୁ ବହୁ ବିତ୍ତ ଦେଲେ...ଉତ୍ତମ ଅଶ୍ୱଯୁକ୍ତ ସୁନ୍ଦର ରଥ ଦେଲେ...ଏବଂ ପ୍ରକୋଷ୍ଠ ଅଟ୍ଟାଳିକା ଧନଧାନ୍ୟେ ପୂର୍ଣ୍ଣ କରିଦେଲେ ।...ବ୍ରାହ୍ମଣର ତୃଷ୍ଣା ଆହୁରି ବଢ଼ିଲା...ମନ୍ତ୍ର ରଚନା କରି ବ୍ରାହ୍ମଣ ପୁଣି ଇକ୍ଷ୍ୱାକୁଙ୍କ ନିକଟକୁ ଗଲା—"ଯେପରି ଜଳ, ଭୂମି, ହିରଣ୍ୟ...କିମ୍ବା ଧନ ବା ଧାନ୍ୟ, ସେହିପରି ଗାଭୀ ମଧ୍ୟ ମନୁଷ୍ୟ ନିମିତ୍ତ ସୃଷ୍ଟ...ଏହା ଭୋଗ-ବସ୍ତୁ; ରାଜା ଯଜ୍ଞ କର !...ଏଇଥର ବ୍ରାହ୍ମଣର ଅନୁଶାସନରେ ରାଜା ଯଜ୍ଞରେ ବହୁ ସହସ୍ର ଗୋବଧ କଲେ ।"

ଅନ୍ୟାନ୍ୟ ଦେଶରେ ପୁରୋହିତ ଓ ଶାସକର ସ୍ୱାର୍ଥକୁ ଏଇ ଏକ ପ୍ରକାର ଭାବରେ ସମନ୍ୱିତ କରି ନିଆଯାଇଛି । ସେଠାରେ ମଧ୍ୟ ରାଜାମାନେ ଦାନ-ଦକ୍ଷିଣା ପ୍ରଭୃତି ରୂପେ ପୁରୋହିତଙ୍କୁ ସେମାନଙ୍କର ଭୋଗବସ୍ତୁର ଗୋଟାଏ ଅଂଶ ଛାଡ଼ି ଦେଇଛନ୍ତି । ଏହା ପ୍ରକୃତ ପକ୍ଷରେ ରାଜନ୍ୟମାନଙ୍କର ଶୋଷଣକୁ ନିର୍ବିରୋଧ ଓ ଧର୍ମାନୁମୋଦିତ ରଖିବା ପାଇଁ ପୁରୋହିତଙ୍କୁ ଉତ୍କୋଚ ଦାନ ଛଡ଼ା କିଛି ନୁହେଁ । ଭାରତବର୍ଷରେ କ୍ଷତ୍ରିୟ-ବ୍ରାହ୍ମଣର ଏହି ସ୍ୱାର୍ଥ ସମନ୍ୱୟ ବ୍ୟାପାର ଆହୁରି ଗଭୀର ଭାବରେ ସଂପନ୍ନ ହୋଇଥିଲା । ଏଠାର ରାଜାମାନେ ପୁରୋହିତମାନଙ୍କୁ କେବଳ ମାତ୍ର ଭୋଗ ସଂପତ୍ତି ଦାନ କରିବାରେ ହିଁ କ୍ଷାନ୍ତ ନ ଥିଲେ, ସେମାନେ ସ୍ୱ-ଇଚ୍ଛାରେ ସମାଜରେ ନିଜର ସ୍ଥାନକୁ ମଧ୍ୟ ବ୍ରାହ୍ମଣଙ୍କ ତଳେ ସ୍ୱୀକାର କରି ନେଇ-ଥିଲେ (୫୯) ।

---

*—ସର୍ବମେଧ ଯଜ୍ଞ ।

ଏହି ଆଲୋଚନାର ତାତ୍ପର୍ଯ୍ୟ ହେଉଛି, ଭାରତରେ କୃଷି-ଭିତ୍ତିକ ସମାଜ ପାର୍ଦ୍ଧବନ ହୃଷ୍ଟି ରହିବାର କାରଣମାନଙ୍କ ମଧ୍ୟରୁ ଏହି ସାମନ୍ତବାଦ ଓ ତା' ସହିତ ଧର୍ମର ସଂଯୋଗ ହିଁ ମୁଖ୍ୟ। ଅନ୍ୟାନ୍ୟ କାରଣମାନଙ୍କ ମଧ୍ୟରେ ନାତିଶୀତୋଷ୍ଣ ଜଳବାୟୁରେ ଭାରତବାସୀଙ୍କ ଜୀବନମାନ ସରଳ ଥିଲା, ଉର୍ବର ଭୂମି ଯୋଗୁ କୃଷି-ସମାଜର ଜୀବନ-ଯୁଦ୍ଧ ସହଜ ହୋଇଥିଲା, ବିରାଟ ଦେଶରେ ସେତେବେଳେ ଜନସଂଖ୍ୟା ଥିଲା ଅଳ୍ପ; ଦ୍ୱନ୍ଦ୍ୱ ଦେଖାଦେଲେ ନୂତନ ଗ୍ରାମ ସ୍ଥାପନାରେ ବାଧା ନ ଥିଲା, ବିଜେତା ଓ ଅନ୍ୟାନ୍ୟ ଜାତିର ଆଗମନରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତକ ମଧ୍ୟରେ ହିଁ ଏଠାରେ ଜନତନ୍ତ୍ରୀ ଚିନ୍ତାର ଅବସାନ ହେଲା ଏବଂ ଏହା ପରଠାରୁ ପାର୍ଦ୍ଧ ହଜାର ବର୍ଷ ଧରି ଭାରତବର୍ଷରେ ଏକତାନ୍ତ୍ରିକ ସାମନ୍ତନାୟକତାର କାଳ ଚାଲିଆସିଲା, ସର୍ବଶେଷରେ ସଂସ୍କୃତି ଓ ବିଚାରଧାରା ପରିବର୍ତ୍ତନରେ ଭାରତବର୍ଷର ଧର୍ମ ବିଶେଷ କୌଣସି ସାହାଯ୍ୟ କରିପାରିଲା ନାହିଁ। ନୂତନ ଧର୍ମର ପ୍ରବର୍ତ୍ତନ ପରେ ମଧ୍ୟ ଏଠାରେ ସାଧାରଣ ଜନତା ସେମାନଙ୍କର ପୂର୍ବାଶ୍ରିତ ଧର୍ମରେ ଆସକ୍ତ ରହିଗଲେ।

ଯେଉଁ ସାମ୍ୟ କଥା ବେଦରେ ଉଲ୍ଲେଖ ଅଛି, ତାହାର ଯୁଗ ଋକ୍‌ବୈଦିକ କାଳରୁ ହିଁ ଶେଷ ହୋଇଯାଇଛି। ପରବର୍ତ୍ତୀ ମହାଭାରତ ଯୁଗରେ ମନୁଷ୍ୟ ମନୁଷ୍ୟର କାହିଁକି ଶତ୍ରୁ-ମିତ୍ର ହୁଏ, ତାହାର ମୌଳିକ ଚିନ୍ତା ଯାହା ପ୍ରକାଶ ପାଇଛି, ତାହାର କେନ୍ଦ୍ରବିନ୍ଦୁ ହେଉଛି ଧନ। ସେହି ଧନର ବୈଷମ୍ୟରୁ ହିଁ ବର୍ତ୍ତମାନ ସମାଜରେ ଦ୍ୱନ୍ଦ୍ୱ-ବିରୋଧର ସୃଷ୍ଟି ଓ ତାହାର ସାମ୍ୟରୁ ହିଁ ଦ୍ୱନ୍ଦ୍ୱର ସମାଧାନ ଓ ସାମ୍ୟ ପ୍ରତିଷ୍ଠିତ ହୋଇପାରିବ। ମହାଭାରତର ସେହି ସୂକ୍ତି କେତୋଟି ହେଉଛି :—

"ନ କଶ୍ଚିତ୍ କସ୍ୟଚିନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚିଦ୍ରିପୁଃ
ଅର୍ଥତସ୍ତୁ ନିବଧ୍ୟନ୍ତେ ମିତ୍ରାଣି ରିପବସ୍ତଥା ॥"

—ଶାନ୍ତିପର୍ବ, ୧୩୮।୧୧୦

ଅର୍ଥାତ୍ କେହି କାହାର ମିତ୍ର ନୁହେଁ କି କେହି କାହାର ଶତ୍ରୁ ନୁହେଁ । ଶତ୍ରୁ ମିତ୍ର ଦୁହେଁ ଧନରୁ ହିଁ ସୃଷ୍ଟି ହୁଅନ୍ତି ।

ଏହି ଧନ-ବୈଷମ୍ୟ ହିଁ ବର୍ତ୍ତମାନ ଭାରତୀୟ ସଂସ୍କୃତିର ସଂକଟ ।



# ପାଦଟୀକା

୧ । ଭାରତୀୟ ସମାଜ ପଦ୍ଧତି—ଡଃ ଭୂପେନ୍ଦ୍ରନାଥ ଦତ୍ତ, ୧ମ ଭାଗ, ପୃଷ୍ଠା—୭୧ ।
୨ । Primitive Culture, London, 1871, Vol. I, P-7.
୩ । Sociology, P.B. Horton & C. L. Hunt, U.S.A., 1964, P-51.
୪ । ଭାରତୀୟ ସଂସ୍କୃତି—ପୃଷ୍ଠା-୨୪
୫ । ସଂସ୍କୃତିର ରୂପାନ୍ତର—ପୃଷ୍ଠା—୭୮-୭୯
୬ । ଏକନ ପୃଷ୍ଠା-୭୯
୭ । ଏକନ ପୃଷ୍ଠା-୮୧
୮ । An Outline of Racial Ethnology in India—B. S. Guha, Royal Asiatic Society of Bengal, 1937 ଓ Stone Age in India—Krishnaswamy, Ancient India No. 3 ଦ୍ରଷ୍ଟବ୍ୟ ।
୯ । ଗର୍ଡ଼ନ ଚାଇଲଡ୍ (Childe)—What Happened in History, Pelican.
M. Wheeler—Ancient India.
Piggott—Some Ancient Cities of India.
୧୦ । John Marshall—Mohenjo-daro and the Indian Civilization, Vol. I. P-110.

୧୧ । ଷଷ୍ଠ ଛର ରୂପାନ୍ତର—ଗୋପାଳ ହାଲଦାର ।
୧୨ । Ancient India No. 3, Harappa, 1946—by R.E.M. Wheeler.
୧୩ । G. Childe—New Light on the Most Ancient East, London, 1954.
୧୪ । Wheeler—Indian Culture.
S. Piggott—Prehistoric India, London, 1950.
୧୫ । Modern Review.
୧୬ । Thomas—Journal of the Royal Asiatic Society, 1932-P. 459.
Chatterji—Modern Review—1924, P. 678-9.
Menon—Prabudha Bharat—1934, P. 348-51.
Rawlinson—Aryan Path—1934, P-84
୧୭ । V. G. Childe—Man Makes Himself, London, 1959.
G. Thomson—Studies in Ancient Greek Society, London, Vol. 1. 1949, Vol. II—1955.
୧୮ । A. A. Macdonell—History of Sanskrit Literature, London, 1905, P-45.
୧୯ । Dr. Sorup—Indian Culture (ଅଙ୍କା) ।
୨୦ । Hopkins—Journal of the American Oriental Society.
୨୧ । A. A. Macdonell and A. B. Keith—Vedic Index 2, Vols, London—1912
୨୨ । V. G. Childe—New Light on the Most Ancient East, London—1954.

୧୩ । R. P. Chand—Memories of the Archaeological Survey of India, Vol.-31, P. 3-5.

୧୪ । J. Marshall—Mohenjo-daro and the Indus Civilization, 3 Vols, London, 1931.
M. S. Vats—Excavations at Harappa, 2 Vols, Delhi—1940.
E. J. H. Mackay—Chanhu-daro Excavations, New Haven, 1943.
Further Excavations at Mahenjo-daro, 2 Vols, Delhi, 1938.
M. Wheeler—Ancient India, Bulletin of the Archaeological Survey of India, Delhi.
S. Piggott—Prehistoric India, London, 1950.
V. G. Childe—N. L.M. A. East, London, 1954.

୧୫ । M. Wheeler—in Ancient India.
Bulletin of the Archaeological Survey of India, Delhi, No. 3, P. 74, 81, 85.

୧୬ । E. J. H. Mackay—Chanhu-daro Excavations, New Haven, 1943.

୧୭ । Do

୧୮ । Piggott.

୧୯ । Do

୨୦ । B. Hrozny—Ancient History of Western Asia, India and Crete, Prague.

୨୧ । D. D. Kosambi—An Introduction to the Study of Indian History, Bombay—1956.

୩୨ । J. D. Bernal—Science in History, London, 1954.

Giles in Encyclopedia of Religion and Ethics Ed. Hastings, Edinburgh, 1908-18.

R. Briffault—The Mothers, 3 Vols. ( 2nd Edition ), London, 1952.

G. Thomson—Aeschylus and Athens, London, 1941.

Religion, London, 1950.

Studies in Ancient Great Society, London, Vol. I-1949, Vol. II-1955.

V. G. Childe—What Happened in History, P. 48-49 and 57 to 58.

କୃଷିକାର୍ଯ୍ୟ ଇତ୍ୟାଦ ଅବସ୍ଥାରର ଉଲ୍ଲେଖ କର ବ୍ରିଫଲ୍ଟ ଏଥିରେ ମନ୍ତବ୍ୟ କରନ୍ତି—

"All the foregoing inventions and discoveries were, judged by ethnographic evidence, the work of women."

୩୩ । G. Thomson—Studies in Ancient Great Society, Vol. II, London, 1949, P. 42.

୩୪ । ଖାସିମାନଙ୍କ ଦୃଷ୍ଟାନ୍ତରେ ( C. J. Lyall in Gurdon XIX-XX ) ଅଜି ମାତୃ-ପ୍ରଧାନ ସମାଜ ବ୍ୟବସ୍ଥା ଓ ଦେବୀ-ପ୍ରଧାନ ଦେବଲୋକ ମଧ୍ୟରେ ସାକ୍ଷାତ୍ ସମ୍ପର୍କ ରହିଅଛି ।

୩୫ । Chanda—Indian Archaeology : A Review.

୩୬ । Do Do P. 149.

"It should be noted in this connection that the Aryan—Hellenic invaders of Greece were not Saktas."

Farnell—in Encyclopaedia of Religion and Ethics, Ed-Hastings, Edinburg, 1908-1918.

୩୭ । Thomson—SAGS, Vol. I, P. 42.
R. Briffault—The Mothers, Vol. 3 (2nd Ed.), London. 1952.

୩୮ । ବୈଦିକ ସାହିତ୍ୟରେ ପୁରୁଷ-ପ୍ରଧାନର ଦେତେକ ଦୃଷ୍ଟାନ୍ତ ନିଦର୍ଶନ ପାଇଁ M. Winternitzଙ୍କର History of Indian Literature, Vol. I, Calcutta-1927 ଦ୍ରଷ୍ଟବ୍ୟ ।

୩୯ । Keith.
୪୦ । M. Winternitz—H. of I. L., Vol. I
୪୧ । ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ବିଶଦ ପରିଚୟ Winternitzଙ୍କର H. I. L.—187-225, Macdonell H.S.L.—31-4 ଏବଂ Renou 25-32 ଦ୍ରଷ୍ଟବ୍ୟ ।
୪୨ । M. Winternitz—H.I.L., Vol. I ଦ୍ରଷ୍ଟବ୍ୟ ।
୪୩ । ମହାଭାରତର ସମାଜ—ଶ୍ରୀ ସୁଖମୟ ଭଟ୍ଟାଚାର୍ଯ୍ୟ ଶାସ୍ତ୍ରୀ ସପ୍ତତୀର୍ଥ 'ନବେଦନ' ଦ୍ରଷ୍ଟବ୍ୟ ।
୪୪ । ସଂସ୍କୃତ ସାହିତ୍ୟ—୨ୟ ଖଣ୍ଡ—ଡକ୍ଟର କୃଷ୍ଣବିହାରୀ ତ୍ରିପାଠୀ ।
୪୫ । ମହାଭାରତର ସମାଜ—ଦ୍ରଷ୍ଟବ୍ୟ ।
୪୬ । Slavery in Ancient India by Dev Raj Chanana, Chapter—III
Childe, P. 175.

୪୮ । K. P. Jayaswal, Hindu Polity, P. 394—

> "From a statement of Patanjali it is clear that in a republic, there used to be slaves and artisans to whom the peculiar forms which denoted the citizens of a particular republic did not apply."

୪୯ । Childe—W.H.H., P.162-3.

୫୦ । Taxila, Vol. I, P.101.

୫୧ । ଭାରତୀୟ ସଂସ୍କୃତି—ଡଃ ଦେବରାଜ, ପୃ-୧୦ ।

୫୨ । ଏଜନ ପୃ-୧୧ ।

୫୩ । ଏଜନ ପୃ-୧୩ ।

୫୪ । ତତଃ କିଂପୁରୁଷାବାସଂ ସିଦ୍ଧଚାରଣସେବିତମ୍ ।
ଦଦୃଶୁର୍ହୃଷ୍ଟରୋମାଣଃ ପର୍ବତଂ ଗନ୍ଧମାଦନମ୍ ॥
ବିଦ୍ୟାଧରାନୁଚରିତଂ କିନ୍ନରୀଭିସ୍ତଥୈବ ଚ ।
ଗଜସଂଘସମାବାସଂ ସିଂହବ୍ୟାଘ୍ରଗଣାୟୁତମ୍ ॥
ଶରଭୈର୍ନାଦସଂଘୁଷ୍ଟଂ ନାନାମୃଗନିଷେବିତମ୍ ।
ତେ ଗନ୍ଧମାଦନବନଂ ତନ୍ନନ୍ଦନବନୋପମମ୍ ॥
ମୁଦିତାଃ ପାଣ୍ଡୁତନୟା ମନୋହୃଦୟନନ୍ଦନମ୍ ।
ବିବିଶୁଃ କ୍ରମଶୋ ବୀରାଃ ଅରଣ୍ୟଂ ଶୁଭକାନନମ୍ ॥
ଶ୍ରୋତ୍ରରମ୍ୟାନ ସୁମଧୁରାନ୍ ଶବ୍ଦାନ୍ ଖଗମୁଖେରିତାନ୍ ।
ସର୍ବର୍ତ୍ତୁ ଫଳଭାରାଢ୍ୟାନ୍ ସର୍ବର୍ତ୍ତୁ କୁସୁମୋଜ୍ଜ୍ୱଳାନ ॥
ପଶ୍ୟନ୍ତଃ ପାଦପାଂଶ୍ଚାପି ଫଳଭାରାବନାମିତାନ୍ ।
ଆମ୍ରାନାମ୍ରାତକାନ୍ ଭବ୍ୟାନ୍ନାରିକେଳାନ୍ ସତିନ୍ଦୁକାନ୍ ॥

ମୁଞ୍ଜାତକାଂସ୍ତଥାଞ୍ଜୀବନ୍ଦାଡ଼ିମାନ୍ ବୀଜପୂରକାନ୍ ।
ପନସାଂଲ୍ଲକୁଚାନ୍ ମୋଚାନ୍ ଖର୍ଜୂରାନମ୍ଳବେତସାନ୍ ॥

× × × × ×

ମୁଞ୍ଜାତକାଂସ୍ତଥାଞ୍ଜୀବନ୍ଦାଡ଼ିମାନ୍ ବୀଜପୂରକାନ୍ ।
ପନସାଂଲ୍ଲକୁଚାନ୍ ମୋଚାନ୍ ଖର୍ଜୂରାନମ୍ଳବେତସାନ୍ ॥

× × × × ×

ଚକୋରୈଃ ଶତପତ୍ରୈଶ୍ଚ ଭୃଂଗରାଜୈସ୍ତଥା ଶୁକୈଃ ।
କୋକିଲୈଃ କଳବିଂକୈଶ୍ଚ ହାରୀତୈର୍ଜୀବଜୀବକୈଃ ॥
ପ୍ରିୟକୈଶ୍ଚାତକୈଶ୍ଚୈବ ତଥାନ୍ୟୈର୍ବିବିଧୈଃ ଖଗୈଃ ।
ଶ୍ରୋତ୍ରରମ୍ୟଂ ସୁମଧୁରଂ କୂଜଦ୍ଭିଶ୍ଚାପ୍ୟଧିଷ୍ଠିତାନ୍ ॥
ସରାଂସି ଚ ମନୋଜ୍ଞାନି ସମନ୍ତାଜ୍ଜଳଚାରିଭିଃ ।
କୁମୁଦୈଃ ପୁଣ୍ଡରୀକୈଶ୍ଚ ତଥା କୋକନଦୋତ୍ପଳୈଃ ॥
କହ୍ଲାରୈଃ କମଳୈଶ୍ଚୈବ ଆଚିତାନି ସମନ୍ତତଃ ।

× × × ×

ସିନ୍ଧୁବାରାଂସ୍ତଥୋଦାରାନ୍ ମନ୍ମଥସ୍ୟେବ ତୋମରାନ୍ ।

× × × ×

ତଥୈବ ବନରାଜୀନାମୁଦାରାନ୍ ରଚିତାନିବ ।
ବିରାଜମାନାଂସ୍ତେଽପଶ୍ୟଂସ୍ତିଲକାଂସ୍ତିଲକାନିବ ॥

—ବନପର୍ବ, ୧୫୮।୩୮-୬୮

୫୫ । ସ୍ୱସା ତସ୍ୟାନବଦ୍ୟାଙ୍ଗୀ ଦ୍ରୌପଦୀ ତନୁମଧ୍ୟମା ।
ନୀଳୋତ୍ପଳସମୋ ଗନ୍ଧୋ ଯସ୍ୟାଃ କ୍ରୋଶାତ୍ ପ୍ରବାତି ବୈ ॥
—ଆଦିପର୍ବ, ୧୮୩।୧୦ ।

୫୬ । ଆପ୍ଲୁତାଂଗୀ ସୁବସନା ସର୍ବାଭରଣଭୂଷିତା ।
ମାଲାଂ ଚ ସମୁପାଦାୟ କାଂଚନୀଂ ସମଲଂକୃତାମ୍ ॥
ଅବତୀର୍ଣ୍ଣା ତତୋ ରଂଗଂ ଦ୍ରୌପଦୀ ଭରତର୍ଷଭ ॥
—ଆଦିପର୍ବ, ୧୮୫।୨୯-୩୦ ।

୫୭ । ଜଳାଘାତାଟ୍ଟହାସୋଗ୍ରାଂ ଫେନନିର୍ମଳହାସିନୀମ୍ ।
କ୍ୱଚିଦ୍ ବେଣୀକୃତଜଳାଂ କ୍ୱଚିଦାବର୍ତ୍ତଶୋଭିତାମ୍ ॥
କ୍ୱଚିତ୍ସ୍ତିମିତଗମ୍ଭୀରାଂ କ୍ୱଚିଦ୍ ବେଗସମାକୁଳାମ୍ ।
କ୍ୱଚିଦ୍ ଗମ୍ଭୀରନିର୍ଘୋଷାଂ କ୍ୱଚିଦ୍ ଭୈରବନିଃସ୍ୱନାମ୍ ॥
ହଂସସାରସସଂଘୁଷ୍ଟାଂ ଚକ୍ରବାକୋପଶୋଭିତାମ୍ ।
ସଦାମତ୍ତୈଶ୍ଚ ବିହଗୈରଭିପନ୍ନାମନିନ୍ଦିତାମ୍ ॥
—ଅଯୋଧ୍ୟା କାଣ୍ଡ, ୫୦।୧୬,୧୭,୧୯

୫୮ । ମାନବସମାଜ – ରାହୁଲ ସାଂସ୍କୃତାୟନ, ୫ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।
୫୯ । ଏଜନ ।



ମୁଦ୍ରାକର—ଶ୍ରୀ ଅଜୟକୁମାର ଘୋଷ, ଶ୍ରୀହରନାଥ ପ୍ରେସ, କଟକ-୨

